# ସୃଷ୍ଟି ଓ ସମୀକ୍ଷା



ଓଡ଼ିଆ ସାହିତ୍ୟ ସମାଜ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

# ସୃଷ୍ଟି ଓ ସମୀକ୍ଷା

( ମୃତ୍ୟୁଞ୍ଜୟ ରଥଙ୍କ କୃତ ବ୍ରହ୍ମଙ୍କ ମଧୁସୂଦନ

ଓ

ସ୍ମୃତି-ଅର୍ଘ୍ୟ )

୧୯୯୭-୯୮




ସମ୍ପାଦନା :

ଡଃ ମହେଶ୍ୱର ମହାନ୍ତି

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ଓଡ଼ିଆ ସାହିତ୍ୟ ସମାଜ

ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

ଓଡ଼ିଆ ସାହିତ୍ୟ ସମାଜ

ସଭାପତି :

ଶ୍ରୀ ଅସିତ କୁମାର ଘୋଷ, ଏମ୍. ଏସ୍. ସି.

ଅଧ୍ୟକ୍ଷ, ଖ୍ରୀଷ୍ଟ ମହାବିଦ୍ୟାଳୟ

ମୁଖ୍ୟ ସଂପାଦକ :

ଡଃ ମହେଶ୍ୱର ମହାନ୍ତି

ରିଡ଼ର ଓ ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ

ସଂପାଦନା ମଣ୍ଡଳୀ :

୧ । ଶ୍ରୀ ଈଶ୍ୱରଚନ୍ଦ୍ର ଖଟୁଆ, ରିଡ଼ର

୨ । ଡଃ ପ୍ରଫୁଲ୍ଲ କୁମାର ଦାଶ, ରିଡ଼ର

୩ । ଡଃ ପ୍ରାଣରଞ୍ଜନ ଦାସ, ରିଡ଼ର

୪ । ଡଃ ସୁରେନ୍ଦ୍ରନାଥ ଆଚାର୍ଯ୍ୟ, ଅଧ୍ୟାପକ

୫ । ଡଃ କୃତ୍ତିବାସ ଷଡ଼ଙ୍ଗୀ, ଅଧ୍ୟାପକ

୬ । ଶ୍ରୀ ଦୈତାରି ଶୁକ୍ଳ, ଅଧ୍ୟାପକ

୭ । ଡଃ ପ୍ରଦୀପ କୁମାର ଧଳ, ଅଧ୍ୟାପକ

ମୁଦ୍ରଣ : ପୁଷ୍ପଗିରି ପ୍ରେସ, କାଫଲାବଜାର, କଟକ-୨





| ବିଷୟ | ଲେଖକ | ପୃଷ୍ଠା |
|---|---|---|
| ସାହିତ୍ୟ ସମାଲୋଚକ ଓ ଗବେଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ | ଶ୍ରୀ ପଠାଣି ପଟ୍ଟନାୟକ | ୧ |
| ବ୍ରହ୍ମର୍ଷି ମଧୁସୂଦନ (ସ୍ଥାନ, ଜନ୍ମ ଓ ବଂଶ ପରିଚୟ, ବାଲ୍ୟ ଜୀବନ ଓ ଶିକ୍ଷା, ଧର୍ମାନୁରାଗ ଓ ବ୍ରାହ୍ମସମାଜ, କର୍ମ ଜୀବନ, ଇନ୍ଦ୍ରଧନୁ ବିଜୁଳି ବିବାଦ, ବାଲେଶ୍ୱରରୁ କଟକକୁ ବଦଳି, ଟ୍ରେନିଂ ସ୍କୁଲରେ ସାହିତ୍ୟ ସଭା, ନୂତନ ବିଦ୍ୟାଳୟ ପ୍ରତିଷ୍ଠା, ନୈତିକ ଜୀବନ, ମଧୁସୂଦନ ଓ ପ୍ୟାରୀମୋହନ, ପିତୃ-ମାତୃଭକ୍ତି, ଭ୍ରାତୃସ୍ନେହ, ପାରିବାରିକ ଜୀବନ, ସାଧୁଚରଣ ରାୟ, ସାଧୁଚରଣ ଓ ବ୍ରାହ୍ମଧର୍ମ, ମଧୁସୂଦନଙ୍କ ପାରିବାରିକ ଶୃଙ୍ଖଳା, ଧର୍ମୋଦାରତା, ବ୍ରହ୍ମୋପାସନା, ଅନ୍ତିମ କାଳ) | ମୃତ୍ୟୁଞ୍ଜୟ ରଥ | ୮ |
| ଶ୍ରାଦ୍ଧବାସରେ | ବିଜୟଚନ୍ଦ୍ର ମଜୁମଦାର | ୧୨୬ |
| ପରଲୋକଗତ ପୁଣ୍ୟାତ୍ମା ଜ୍ୟେଷ୍ଠ ତାତ | ରେବା ରାୟ | ୧୩୦ |
| ପିତୃ-ସ୍ମୃତି | ସୁକାନ୍ତ ରାଓ | ୧୩୮ |
| ସ୍ୱର୍ଗୀୟ ମଧୁସୂଦନ ରାଓ | ନୀଳକଣ୍ଠ ଦାଶ | ୧୪୦ |
| କେତୋଟି କଥା | ଗୋଦାବରୀଶ ମିଶ୍ର | ୧୫୧ |
| ସ୍ୱର୍ଗତ ରାୟ ମଧୁସୂଦନ ରାଓ ବାହାଦୁର | ମଧୁସୂଦନ ଦାଶ | ୧୫୮ |
| ଶୋକ-ସ୍ମୃତି | ଶଶୀଭୂଷଣ ରାୟ | ୧୬୪ |
| ରାୟ ମଧୁସୂଦନ ରାଓ ବାହାଦୁର | ନନ୍ଦକିଶୋର ବଳ | ୧୬୮ |


---

ଏ ପର୍ଯ୍ୟନ୍ତ ପ୍ରକାଶ ପାଇଥିବା

# 'ସୃଷ୍ଟି ଓ ସମୀକ୍ଷା'ର ବିଭିନ୍ନ ସଂଖ୍ୟା

୧୯୭୦-୭୧ ଶିକ୍ଷାବର୍ଷଠାରୁ 'ସୃଷ୍ଟି ଓ ସମୀକ୍ଷା' ନାମରେ ଓଡ଼ିଆ ସାହିତ୍ୟ ସମାଜ ତରଫରୁ ଏକ ଗବେଷଣାଧର୍ମୀ ବାର୍ଷିକ ମୁଖପତ୍ର ପ୍ରକାଶ ପାଇ ଆସୁଅଛି । ବିଭିନ୍ନ କାରଣରୁ ଏହାର ନିୟମିତ ପ୍ରକାଶନ ବିଘ୍ନିତ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଚଳିତ ସଂଖ୍ୟାଟିକୁ ମିଶାଇ ମୋଟ ୧୯ଟି ସଂଖ୍ୟା ପ୍ରକାଶ ପାଇଅଛି । ସଂଖ୍ୟାଗୁଡ଼ିକର ସୂଚନା ନିମ୍ନରେ ପ୍ରଦାନ କରାଗଲା ।

| | | |
|---|---|---|
| ୧ । | ୧୯୭୦-୭୧ | ଛାତ୍ର ଓ ଅଧ୍ୟାପକମାନଙ୍କ ଦ୍ୱାରା ଲିଖିତ ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା |
| ୨ । | ୧୯୭୧-୭୨ | ଛାତ୍ର ଓ ଅଧ୍ୟାପକମାନଙ୍କ ଦ୍ୱାରା ଲିଖିତ ବିଭିନ୍ନ ବିଷୟକ ଏକ ମିଳିତ ସଂଖ୍ୟା |
| ୩ । | ୧୯୭୨-୭୩ | ଭକ୍ତି ବିଶେଷାଙ୍କ |
| ୪ । | ୧୯୭୩-୭୪ | କ୍ଷୁଦ୍ରଗଳ୍ପ ବିଶେଷାଙ୍କ |
| ୫ । | ୧୯୭୪-୭୫ | ନାଟକ ବିଶେଷାଙ୍କ |
| ୬ । | ୧୯୭୫-୭୬ | ଅଭିମନ୍ୟୁ ସାମନ୍ତସିଂହାର ବିଶେଷାଙ୍କ |
| ୭ । | ୧୯୭୬-୭୭ | ଧର୍ମ ବିଶେଷାଙ୍କ |
| ୮ । | ୧୯୭୭-୭୮ | ପୁରାଣ ବିଶେଷାଙ୍କ |
| ୯ । | ୧୯୭୮-୭୯ | ସାହିତ୍ୟରେ ବିଭିନ୍ନ 'ବାଦ' (ism) ବିଶେଷାଙ୍କ |
| ୧୦ | ୧୯୭୯-୮୦ | ରୂପାନ୍ତର ବିଶେଷାଙ୍କ |
| ୧୧ । | ୧୯୮୦-୮୧ | ଉତ୍କଳକବି ମଧୁସୂଦନ ବିଶେଷାଙ୍କ |
| ୧୨ । | ୧୯୮୧-୮୨ | ଫକୀରମୋହନ ବିଶେଷାଙ୍କ |
| ୧୩ । | ୧୯୮୨-୮୩ | ସାରଳା ଦାସ ବିଶେଷାଙ୍କ |
| ୧୪ । | ୧୯୮୫-୮୬ | ବଳରାମ ଦାସ ବିଶେଷାଙ୍କ |
| ୧୫ । | ୧୯୮୬-୮୭ | ବିଜୟ ଚନ୍ଦ୍ର ମଜୁମଦାରଙ୍କ କୃତ 'Typical Selections from Oriya Literature'ର ମୁଖବନ୍ଧର ପୁନଃମୁଦ୍ରଣ |
| ୧୬ । | ୧୯୯୦-୯୧ | ଉପନ୍ୟାସ ବିଶେଷାଙ୍କ |
| ୧୭ । | ୧୯୯୩-୯୪ | ରାଧାନାଥ ବିଶେଷାଙ୍କ |
| ୧୮ । | ୧୯୯୬-୯୭ | ଲୋକସାହିତ୍ୟ ବିଶେଷାଙ୍କ |
| ୧୯ । | ୧୯୯୭-୯୮ | ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ 'ବ୍ରହ୍ମଙ୍କ ମଧୁସୂଦନ' ଓ 'ସ୍ମୃତି ଅର୍ଘ୍ୟ'ର ପୁନଃମୁଦ୍ରଣ |

---

# ସୂଚନା

କବି ମଧୁସୂଦନ ଜନ୍ମ ହୋଇଥିଲେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ୧୮୫୩ ମସିହାରେ, ପରଲୋକ ଗମନ କଲେ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ୧୯୧୨ ମସିହାରେ । ପାର୍ଥିବ ଗଣନାରେ ତାଙ୍କ ଜୀବନକାଳ ହେଉଛି ମାତ୍ର ୬୦ ବର୍ଷ । ଏହି ୬୦ ବର୍ଷର ଜୀବନଗାଥା ଉତ୍କଳବାସୀଙ୍କ ପାଇଁ ବିଶେଷତ୍ୱପୂର୍ଣ୍ଣ କେବଳ ଏହି କାରଣରୁ ନୁହେଁ ଯେ ସେ ଥିଲେ ଜଣେ ପ୍ରତିଭାବାନ ଆଧ୍ୟାତ୍ମବାଦୀ କବି । ଅପର ପକ୍ଷରେ ସେ ଥିଲେ ଜଣେ ଆଦର୍ଶ ମନୀଷୀ, ସାଧୁ, ସତ୍ୟନିଷ୍ଠ, କର୍ତ୍ତବ୍ୟପରାୟଣ, ଦରଦୀ, ବନ୍ଧୁବତ୍ସଳ ତଥା ପରୋପକାରୀ ପରମାର୍ଥୀ ପୁରୁଷ । ନୀଳକଣ୍ଠ ଦାସଙ୍କ ଭାଷାରେ "ଉତ୍କଳର ସାହିତ୍ୟପିତା ମଧୁସୂଦନ ସାହିତ୍ୟ ପାଇଁ ଯେତେ ବଡ଼ ଥିଲେ, ଚରିତ୍ର, ମନୁଷ୍ୟତ୍ୱ, ଉନ୍ନତତା, ଧର୍ମବିଶ୍ୱାସ, ସତ୍ୟସ୍ପୃହା ନିଷ୍ଠାର ଗାରିମା ଓ ପବିତ୍ରତା ପ୍ରଭୃତିରେ ତା'ଠାରୁ ଅନେକ ବଡ ଥିଲେ ।"

ଏହି ଉକ୍ତି ନିର୍ବିବାଦ ଅଟେ । ମଧୁସୂଦନଙ୍କୁ ଉତ୍କଳର ବିଦ୍ୟାସାଗର ଓ ରାମତନୁ ଲାହିଡ଼ୀ ବୋଲି କୁହାଯିବା କମ୍ ଗୌରବର କଥା ନୁହେଁ । ବଙ୍ଗଳାର ପ୍ରଖ୍ୟାତ ବ୍ରାହ୍ମନେତା ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କର ପିତା ପଣ୍ଡିତ ହରାନନ୍ଦ ମଧୁସୂଦନଙ୍କ ପ୍ରତି ଏହି ବିଶେଷଣ ପ୍ରୟୋଗ କରିଥିଲେ ।

ବଙ୍ଗଳା ଭାଷାରେ ଭକ୍ତକବିଙ୍କ ଜୀବନୀ ଲେଖିକା କନ୍ୟା ଅବନ୍ତୀ ଦେବୀ 'ଭକ୍ତକବି ମଧୁସୂଦନ ରାଓ ଓ ଉତ୍କଳେ ନବଯୁଗ' ପୁସ୍ତକର ଉତ୍ସର୍ଗ ପତ୍ରରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଯାଇ ଲେଖିଛନ୍ତି "ଯାହାଙ୍କର ଅମୂଲ୍ୟ ଜୀବନର ମହତ ଦୃଷ୍ଟାନ୍ତ ଜନ୍ମଭୂମି ଉତ୍କଳରେ ନବଯୁଗ ଆନୟନରେ ବିଶେଷ କାର୍ଯ୍ୟକର ହୋଇଥିଲା, ଯାହାଙ୍କର ଜୀବନରେ ଭଗବଦ୍‌ଭକ୍ତିର ଅପୂର୍ବ ବିକାଶ ଦେଖି ଉତ୍କଳବାସୀ ଯାହାଙ୍କୁ ଏକ ବାକ୍ୟରେ 'ଭକ୍ତକବି' ନାମରେ ଆଖ୍ୟାତ କରିଅଛନ୍ତି, ଯାହାଙ୍କର ବାଣୀରେ, ଆଚରଣରେ ଓ ସମଗ୍ର ଜୀବନରେ ଭୂମା ଓ ଭୁବନେଶ୍ୱରର ଅପୂର୍ବ ମହିମା ଉଜ୍ଜ୍ୱଳରୂପେ ପ୍ରକାଶିତ···" ଇତ୍ୟାଦି ।

କବି ନନ୍ଦକିଶୋର ବଳ ମଧ୍ୟ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ସ୍ମୃତି-ଶ୍ରଦ୍ଧାଞ୍ଜଳି ଅର୍ପଣ କରି ତାହାଙ୍କୁ ଉତ୍କଳ ସାହିତ୍ୟରେ ନବଯୁଗର ସ୍ରଷ୍ଟା ବୋଲି କହିଛନ୍ତି । ମଧୁସୂଦନ ତାଙ୍କର ଆତ୍ମଜୀବନୀ ଲେଖି ନାହାନ୍ତି । ଆତ୍ମଜୀବନୀ ଲେଖିବାର ଏକ

ଅଭିଳାଷ ଥିଲା ବୋଲି ତାଙ୍କ ପୁତ୍ର ସୁକାନ୍ତ ସୂଚନା ଦେଇଛନ୍ତି । ମାତ୍ର କବିଙ୍କର ଅକାଳ ବିୟୋଗ ଯୋଗୁଁ ସେ ଅଭିଳାଷ ଚରିତାର୍ଥ ହୋଇପାରିଲା ନାହିଁ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଥିଲେ କବିଙ୍କର ଅତ୍ୟନ୍ତ ପ୍ରିୟ ତଥା ଅନୁଗତ ଶିଷ୍ୟ । ମଧୁସୂଦନଙ୍କ ପରଲୋକ ପରେ ସେ ଧାରାବାହିକଭାବେ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ 'ଭକ୍ତକବି ମଧୁସୂଦନ' ଶିରୋନାମାରେ ତାଙ୍କର ଜୀବନୀ ଲେଖି ଆମ୍ଭମାନଙ୍କର ମହୋପକାର ସାଧନ କରିଛନ୍ତି । ତା ନହେଲେ କବିଙ୍କର ବ୍ୟକ୍ତିଗତ ଜୀବନର ବହୁ ଘଟଣା ହୁଏତ ସବୁଦିନ ପାଇଁ ଅନ୍ଧକାରରେ ରହିଯାଇ ଥାଆନ୍ତା । ଅବନ୍ତୀ ଦେବୀଙ୍କ ସମେତ ପରବର୍ତ୍ତୀ କାଳରେ ଅନ୍ୟ ଯେଉଁମାନେ ଭକ୍ତକବିଙ୍କ ଜୀବନୀ ଲେଖାରେ ପ୍ରବୃତ୍ତ ହୋଇଛନ୍ତି, ବସ୍ତୁତଃ ସେମାନେ ସମସ୍ତେ ମୃତ୍ୟୁଞ୍ଜୟଙ୍କ ଲିଖିତ ଜୀବନୀକୁ ଉପଜୀବ୍ୟ ଭାବରେ ଗ୍ରହଣ କରିଛନ୍ତି ।

ଭକ୍ତକବି ମଧୁସୂଦନ ରଚନାଟିର ପୁନର୍ମୁଦ୍ରଣ ହୋଇଥିବାର ଆମ ଦୃଷ୍ଟିକୁ ଆସିନାହିଁ । ଏହା ଏକ ଦୁର୍ଲଭ ତଥା ମହାର୍ଘ ସାରସ୍ୱତ ସମ୍ପଦ । ଉପାଦେୟତା କାରଣରୁ ଏହାକୁ ଆମେ ସଂଗ୍ରହ କରି ଶିକ୍ଷକ, ଗବେଷକ ତଥା ଗୁଣଗ୍ରାହୀ ପାଠକମାନଙ୍କ ନିମନ୍ତେ 'ଦୃଷ୍ଟି ଓ ସମୀକ୍ଷା'ର ଏହି ବିଶେଷ ସଂଖ୍ୟାରେ ପ୍ରକାଶ କରୁଅଛୁ । ସେଥି ସହିତ କବିଙ୍କ ମୃତ୍ୟୁ ପରେ ତାଙ୍କର ଆତ୍ମଜ ତଥା ସେକାଳର ବିଶିଷ୍ଟ ବ୍ୟକ୍ତିମାନେ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ଯେଉଁ ସ୍ମୃତି ଅର୍ଘ୍ୟ ଅର୍ପଣ କରିଥିଲେ, ସେଥିରୁ ମଧ୍ୟ କେତୋଟି ଏହି ସଂଖ୍ୟାରେ ପୁନଃମୁଦ୍ରିତ ହୋଇଛି । ସେଗୁଡ଼ିକରୁ ମଧୁସୂଦନଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭା ସମ୍ପର୍କରେ ଅଧିକ କିଛି ଆକଳନ କରିହେବ । ଏ ଶ୍ରେଣୀସ୍ଥ ଆଉ କେତୋଟି ରଚନା ଏଥି ସହିତ ସନ୍ନିବେଶ କରିବାର ଇଚ୍ଛା ଥିଲେ ମଧ୍ୟ ପୁସ୍ତକର ସୀମିତ କଳେବର ଦୃଷ୍ଟିରୁ ସେ ପ୍ରଲୋଭନକୁ ପରିତ୍ୟାଗ କରିବାକୁ ପଡ଼ିଲା ।

ସର୍ବୋପରି ଏହି ଦୁର୍ଲଭ ରଚନାଗୁଡ଼ିକୁ ସଂଗ୍ରହ କରି ପ୍ରକାଶନ ନିମନ୍ତେ ଅକୁଣ୍ଠିତ ଭାବରେ ଆମ ହାତରେ ଦେଇଥିବାରୁ ଏହି କଲେଜର ପୁରାତନ ଶିଷ୍ୟ ତଥା ଅଧୁନା ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ଅଧ୍ୟାପକ ଡଃ ମନୋରଞ୍ଜନ ପ୍ରଧାନଙ୍କ ପ୍ରତି ଆମର ଶ୍ରଦ୍ଧାପୂର୍ଣ୍ଣ କୃତଜ୍ଞତା ଜ୍ଞାପନ କରୁଅଛୁ । ଏଥି ସହିତ ଭକ୍ତକବିଙ୍କର ପିତା ଭାଗୀରଥି ରାଓ ଏବଂ ଅନୁଜ ଜଗନ୍ନାଥ ରାଓଙ୍କର ଯେଉଁ ଦୁଇଟି ଫଟୋ ଛପାଯାଇଛି, ସେଥିପାଇଁ ଅବନ୍ତୀ ଦେବୀଙ୍କ ଲିଖିତ ଜୀବନୀ ପୁସ୍ତକର ପ୍ରକାଶକଙ୍କ ନିକଟରେ ମଧ୍ୟ ଆମେ କୃତଜ୍ଞ ।

—ଡଃ ମହେଶ୍ୱର ମହାନ୍ତି



ମଧୁସୂଦନଙ୍କ ପିତା ଭଗୀରଥି ରଓ

( ଜନ୍ମ ଆନୁମାନିକ ଖ୍ରୀ ୧୮୨୭; ମୃତ୍ୟୁ ଖ୍ରୀ ୧୯୦୯ )




ମଧୁସୂଦନଙ୍କ ଅନୁଜ ଜଗନ୍ନାଥ ରାଓ
( ଜନ୍ମ ଖ୍ରୀ ୧୮୫୫; ମୃତ୍ୟୁ ୩୦ ମେ, ଖ୍ରୀ ୧୯୧୯ )

# ସାହିତ୍ୟ ସମାଲୋଚକ ଓ ଗବେଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥ

ଶ୍ରୀ ଫଣୀ ପଟ୍ଟନାୟକ

୧୯୭୧ ମସିହାରେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ ପ୍ରକାଶ କରିଥିଲେ । ଏଥିରୁ ଜଣାଯାଏ ଯେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଥିଲେ ଏକାଧାରରେ ଜଣେ କବି, ଔପନ୍ୟାସିକ, ପ୍ରାବନ୍ଧିକ, ସମାଲୋଚକ, ଐତିହାସିକ ଏବଂ ଶିଶୁ ସାହିତ୍ୟ ଲେଖକ । ପଣ୍ଡିତ ରଥ ଥିଲେ କ୍ଷଣଜନ୍ମା । ସେ ୧୮୮୨ ଖ୍ରୀଷ୍ଟାବ୍ଦ ମେ' ମାସ ୧୪ ତାରିଖରେ ପୁରୀଜିଲ୍ଲା ଭାର୍ଗବୀ ନଦୀକୂଳସ୍ଥ ଦକ୍ଷିଣ ରାଜସ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଥିଲେ ଆତ୍ରେୟଗୋତ୍ରୀ ଦାମୋଦର ରଥ ଏବଂ ମାତା କମଳାଦେବୀ । ୧୯୨୪ ମସିହା ଏପ୍ରିଲ ମାସ ୧୦ ତାରିଖରେ ତାଙ୍କର କର୍ମବହୁଳ ଜୀବନର ଯବନିକା ପଡ଼ିଥିଲା । ମାତ୍ର ବୟାଳିଶବର୍ଷର ଜୀବନକାଳ ଥିଲା ଅତ୍ୟନ୍ତ ସଂଘର୍ଷପୂର୍ଣ୍ଣ ଓ ଘଟଣାବହୁଳ । ନିଜର ନିରବଚ୍ଛିନ୍ନ ସାଧନା ଓ ଗବେଷଣା ଯୋଗୁଁ ଏହି ଅଳ୍ପକାଳ ମଧ୍ୟରେ ସେ ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ଗୌରବର ଅଧିକାରୀ ହୋଇଅଛନ୍ତି । ଅଧ୍ୟାପକ ଗୋପାଳ ଚନ୍ଦ୍ର ମିଶ୍ର ତାଙ୍କ ଲିଖିତ 'ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଜୀବନୀ' ପୁସ୍ତକରେ ଲେଖକଙ୍କର ଜନ୍ମସ୍ଥାନ ଦକ୍ଷିଣ ରାଜସ ବୋଲି ଉଲ୍ଲେଖ କରିଥିଲାବେଳେ ଅନ୍ୟ ଲେଖକମାନେ ତାହା 'ଦକ୍ଷିଣ ରାଢ଼ସ' ବୋଲି କହିଅଛନ୍ତି । ଉଦାହରଣ ସ୍ୱରୂପ ପଣ୍ଡିତ ବିନାୟକ ମିଶ୍ର ତାଙ୍କର "ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ" (୧୯୬୮)ରେ ପଣ୍ଡିତଙ୍କର ପରିଚୟ ନିମ୍ନମତେ ପ୍ରଦାନ କରିଥିଲେ—"ଏହାଙ୍କର ଜନ୍ମସ୍ଥାନ ପୁରୀଜିଲ୍ଲାର ଦକ୍ଷିଣ ରାଢ଼ସ ଗ୍ରାମରେ । କଟକ ଟ୍ରେନିଂ ସ୍କୁଲରୁ ପାସ୍ କରିବା ଉତ୍ତାରେ ସଂସ୍କୃତ ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ କଲେଜିଏଟ ସ୍କୁଲରେ ଓ ଟ୍ରେନିଂ ସ୍କୁଲରେ ପଣ୍ଡିତ ଥିଲେ । ସେ କାଳିଦାସଙ୍କ କୁମାରସମ୍ଭବ କାବ୍ୟ ଓଡ଼ିଆରେ ଅନୁବାଦ କରିଥିଲେ । ସଂସ୍କୃତ 'ଶିବମୋହିନୀ' ଓ 'ମୁଦ୍ରାରାକ୍ଷସ' ନାଟକଦ୍ୱୟ ମଧ୍ୟ ଓଡ଼ିଆରେ ଅନୁବାଦ କରିଥିଲେ । ସେ ବଙ୍ଗ ସାହିତ୍ୟର ଆଦର୍ଶରେ 'ରାଣା ପ୍ରତାପ ସିଂହ' ପ୍ରଭୃତି ପ୍ରବନ୍ଧମାନ ଲେଖି 'ପ୍ରବନ୍ଧପାଠ' ପୁସ୍ତକ ଛପାଇଥିଲେ ଓ ତହିଁରେ ବଙ୍ଗଭାଷାର ପ୍ରଭାବ ପରିଦୃଷ୍ଟ ହୁଏନାହିଁ । ରାଧାନାଥଙ୍କ ଚିଲିକାର ଅନୁକରଣରେ 'ନନ୍ଦନ' କବିତା ପୁସ୍ତକ ରଚନା କରି ମଧ୍ୟ ସେ କବି ରୂପରେ ପରିଚିତ ନୁହନ୍ତି । ଭାରତର ଖ୍ୟାତିଶୀଳା

ନାଗ୍‌ମାନଙ୍କର ଚରିତ ସମ୍ବଳିତ 'ନାରୀଦର୍ପଣ' ଲେଖିଥିଲେ ମଧ୍ୟ 'ଶାରଳାଦାସ' ଓ 'ଅଭିମନ୍ୟୁ ସାମନ୍ତସିଂହାର'ଙ୍କ ଜୀବନୀ ଲେଖିଥିବାରୁ ସେ ଚିରସ୍ମରଣୀୟ ।"

ଐତିହାସିକ ବିନାୟକ ମିଶ୍ର ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ସାହିତ୍ୟସାଧନାର ସମ୍ପୂର୍ଣ୍ଣ ପରିଚୟ ଦେଇପାରି ନାହାନ୍ତି । ସେହିପରି ତାଙ୍କ ପୂର୍ବରୁ ପ୍ରକାଶିତ ଦୁଇଟି ଇତିହାସ ପୁସ୍ତକରେ ଏହି ଅପୂର୍ଣ୍ଣତା ଲକ୍ଷ୍ୟ କରାଯାଏ । ଉଦାହରଣ ସ୍ୱରୂପ—"ଏ ମହାଶୟ ଜଣେ ସଂସ୍କୃତଜ୍ଞ ପଣ୍ଡିତ । ଏ ଅନେକଗୁଡ଼ିଏ ପୁସ୍ତକ ପ୍ରଣୟନ କରି ଅଛନ୍ତି । ସେ ସବୁର ତାଲିକା ନିମ୍ନରେ ପ୍ରଦତ୍ତ ହେଲା ।

(୧) ପ୍ରବନ୍ଧପାଠ, (୨) କଳଙ୍କମୋଚନ ନାଟକ, (୩) ମୁଦ୍ରାରାକ୍ଷସ ନାଟକ, (୪) ସାରଳାଚରିତ, (୫) କୁମାରସମ୍ଭବ, (୬) ମୂଳଶବ୍ଦ ବୋଧିକା, (୭) ନଗ୍ନଜ, (୮) ଅଦ୍ଭୁତ ପରିଣାମ ।

(ଓଡ଼ିଆ ସାହିତ୍ୟର ଇତିହାସ, ଦ୍ୱିତୀୟ ଭାଗ, କବିଜୀବନୀ—୧୯୨୫ ଅପର୍ଣ୍ଣା ପଣ୍ଡା—ପୃ ୯୪-୯୫)

୧୯୨୭ ମସିହାରେ ଶ୍ରୀ ତାରିଣୀଚରଣ ରଥ ତାଙ୍କ ଲିଖିତ 'ଉତ୍କଳ ସାହିତ୍ୟର ଇତିହାସ" ପୁସ୍ତକର ୫୬।୫୭ ପୃଷ୍ଠାରେ ଅବିକଳ ଅପର୍ଣ୍ଣା ପଣ୍ଡାଙ୍କର ବିବରଣୀକୁ ଉଦ୍ଧାର କରି ଲେଖିଥିଲେ—"ଏହାଛଡ଼ା ଲେଖକ ମହୋଦୟ ସାମୟିକ ମାସିକ ପତ୍ରିକାମାନଙ୍କରେ ଅନେକଗୁଡ଼ିଏ ଉତ୍କୃଷ୍ଟ ଗଦ୍ୟ ପ୍ରବନ୍ଧ ଲେଖିଥିଲେ ।" ଅଥଚ ଏହି ଗଣି ଗଣି ପ୍ରକାଶିତ ଗବେଷଣା ପ୍ରବନ୍ଧଗୁଡ଼ିକର ପରିଚୟ ଦେବାପାଇଁ ଏହି ଲେଖକମାନେ ଆଦୌ ଚେଷ୍ଟିତ ହୋଇ ନାହାନ୍ତି ।

୧୯୬୪ ମସିହାରେ ସୁନାମଧନ୍ୟ ଗବେଷଣା ପୁସ୍ତକ "ଓଡ଼ିଆ ସାହିତ୍ୟର ଇତିହାସ—୧୮୦୩-୧୯୨୦" ପ୍ରକାଶିତ ହୋଇଥିଲା । ଗବେଷକ ଅଧ୍ୟାପକ ଡଃ ନଟବର ସାମନ୍ତରାୟ ଏହି ଗ୍ରନ୍ଥରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଆଲୋଚନା ପ୍ରବନ୍ଧ ବିଷୟରେ ପରିଚୟ ପ୍ରଦାନ କରି ଲେଖିଥିଲେ—"ମୃତ୍ୟୁଞ୍ଜୟ ରଥଙ୍କ ଏହି ପ୍ରବନ୍ଧ-ମାନଙ୍କ ମଧ୍ୟରେ 'ଆଦିକବି ସାରଳା ଦାସ' ବୃହତ୍ତମ । ଏଥିରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଆଲୋଚନାର ଧାରା ସୁସ୍ପଷ୍ଟ । କବି ଜୀବନୀ, ସାମାଜିକ, ରାଜନୈତିକ ଓ ଧର୍ମଗତ ପରିବେଶ ପର୍ଯ୍ୟାଲୋଚନା, ସମୟ ନିର୍ଣ୍ଣୟ, ସାହିତ୍ୟିକ ରସ-ସୌନ୍ଦର୍ଯ୍ୟ ପରିଶୀଳନ, ମୂଳତଃ ଐତିହାସିକ ଭିତ୍ତିରେ କୃତିର ମୌଳିକ ସୌନ୍ଦର୍ଯ୍ୟ ସମୀକ୍ଷା ଏଥିରେ ପ୍ରଧାନ । ମହାମଣ୍ଡଳ ଗୀତା ଓ ବ୍ରହ୍ମାଣ୍ଡ ଭୂଗୋଳରେ ଓଡ଼ିଶୀ ଧର୍ମାଲୋଚନା ମୁଖ୍ୟସ୍ଥାନ ଅଧିକାର କରିଛି । ପୁରାତନ ଓଡ଼ିଆ ସାହିତ୍ୟ ବିଶ୍ଳେଷଣ ଦିଗରେ ଶ୍ୟାମସୁନ୍ଦର, ଗୋପୀନାଥ ଓ ମୃତ୍ୟୁଞ୍ଜୟଙ୍କ ଅବଦାନ ଅବିସ୍ମରଣୀୟ । ଅଧ୍ୟବସାୟ, ଗଭୀର ପାଣ୍ଡିତ୍ୟ, ବିଶ୍ଳେଷଣାତ୍ମକ ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ, ବିଶେଷତଃ ପାଶ୍ଚାତ୍ୟ ସମୀକ୍ଷା

ପଦ୍ଧତିର ଅନୁସରଣ ସେମାନଙ୍କ ରଚନାକୁ ଉଚ୍ଚ ପଦବୀରେ ଉପସ୍ଥାପନ କରିପାରି ଅଛି । × × × କବି ରାଧାନାଥ, ବ୍ରହ୍ମର୍ଷି ମଧୁସୂଦନ, କର୍ମୀ ଗୌରୀଶଙ୍କର ରାୟ, ପଣ୍ଡିତ ଫକୀରମୋହନ ବିଶେଷତଃ ଊନବିଂଶ ଶତାବ୍ଦୀର ଉତ୍କଳ ପତ୍ରପତ୍ରିକା— ଏହି ପ୍ରବନ୍ଧମାନଙ୍କରେ ମୃତ୍ୟୁଞ୍ଜୟ ରଥ ଲେଖକଙ୍କ ଜୀବନୀ, ସେମାନଙ୍କର କୃତିର ସମାଲୋଚନା ସଙ୍ଗେ ଯେଉଁ ସମସାମୟିକ ଐତିହାସିକ ବିବରଣୀ ଦେଇଛନ୍ତି, ତାହା ଆଧୁନିକ ସାହିତ୍ୟର ଇତିହାସ ରଚନାରେ ଅତୀବ ସହାୟକ ହେବ, ଏଥିରେ ଆଦୌ ସନ୍ଦେହ ନାହିଁ । ବ୍ରହ୍ମର୍ଷି ମଧୁସୂଦନ ନାମକ ଦୀର୍ଘ ପ୍ରବନ୍ଧ ମୃତ୍ୟୁଞ୍ଜୟଙ୍କର ଏକ ଅମଳିନ କୀର୍ତ୍ତି । × × × ମୃତ୍ୟୁଞ୍ଜୟଙ୍କ କବିଜୀବନୀ ସଂଗ୍ରହ ଓ ବିଭିନ୍ନ ଗବେଷଣା ଅକାଟ୍ୟକାନ୍ତ ହୋଇ ଦେଦୀପ୍ୟମାନ । × × × ବହୁ ପ୍ରମାଦ ପରିପୂର୍ଣ୍ଣ ତାଙ୍କ 'ଉତ୍କଳ ପତ୍ରପତ୍ରିକା' ପ୍ରବନ୍ଧ ଆଜି ବହୁ ଲେଖକଙ୍କ ଚୌର୍ଯ୍ୟବୃତ୍ତିର ଆଶ୍ରୟସ୍ଥଳ ହୋଇଛି ।"

ଅଧ୍ୟାପକ ନଟବର ସାମନ୍ତରାୟ ମଧ୍ୟ ମୃତ୍ୟୁଞ୍ଜୟଙ୍କ ଆଉ କେତେକ ମୂଲ୍ୟବାନ ପ୍ରବନ୍ଧ ଓ ସମାଲୋଚନା ବିଷୟରେ କୌଣସି ଆଲୋକପାତ କରି ନାହାନ୍ତି । ୧୯୬୧ରେ ପ୍ରକାଶିତ 'ମୃତ୍ୟୁଞ୍ଜୟ ଗ୍ରନ୍ଥାବଳୀ' ତାଙ୍କର ରଚନାବଳୀର ସନ୍ତୋଷ-ଜନକ ସଂକଳନ ହୋଇପାରିନାହିଁ । ଅନେକ ମୂଲ୍ୟବାନ ଲେଖା ଏବେ ମଧ୍ୟ ସାମୟିକ ପତ୍ରିକା ଗର୍ଭରେ ଅନାଲୋଚିତ ହୋଇ ରହିଯାଇଛି । ତେବେ ୧୯୬୭ ଖ୍ରୀଷ୍ଟାବ୍ଦରେ ଡଃ କୃଷ୍ଣଚନ୍ଦ୍ର ଦାଶ ତାଙ୍କର "ଜୀବନୀ ଓ ଜୀବନ" ପୁସ୍ତକରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ବିଷୟରେ ଆଲୋଚନା କଲାବେଳେ ଅନେକ ନୂତନ ତଥ୍ୟ ପରିବେଷଣ କରିଥିବା ଜଣାଯାଏ । ସେଥିରୁ ଜଣାଯାଏ ଯେ ପଣ୍ଡିତ ମୃତ୍ୟୁଞ୍ଜୟ ୧୯୦୦ ଖ୍ରୀଷ୍ଟାବ୍ଦରେ ଟ୍ରେନିଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କିଛିକାଳ ଏକାଡେମୀ ଓ ଭିକ୍ଟୋରିଆ ସ୍କୁଲ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ)ରେ ଶିକ୍ଷକତା କରିଥିଲେ । ୧୯୦୬ ସାଲରେ ସଂସ୍କୃତ କାବ୍ୟରେ ଉପାଧି ଲାଭ କରି ସେ ରେଭେନ୍‌ସା କଲେଜିଏଟ ସ୍କୁଲରେ ଶିକ୍ଷକ ଭାବରେ ଯୋଗ ଦେଲେ ଏବଂ ୧୯୧୯ଠାରୁ କଟକ ଟ୍ରେନିଂ ସ୍କୁଲରେ କାର୍ଯ୍ୟ କରିଥିଲେ । ସେ କିଛିକାଳ ପୁରୀ ଜିଲ୍ଲା ସ୍କୁଲରେ ମଧ୍ୟ ଶିକ୍ଷକତା କରିଥିଲେ । ସେ ଥିଲେ ଆଜୀବନ ସାହିତ୍ୟ ସାଧକ । ସାହିତ୍ୟର ବିଭିନ୍ନ ବିଷୟରେ ଲେଖନୀ ଚାଳନା କରି ସେ ଯଶସ୍ୱୀ ହୋଇଥିଲେ । ପାଠ୍ୟପୁସ୍ତକ, ପ୍ରତ୍ନତତ୍ତ୍ୱ, ଜୀବନଚରିତ, ଅନୁବାଦ, ଗବେଷଣା ପ୍ରବନ୍ଧ ଏବଂ ଶିଶୁସାହିତ୍ୟ ପ୍ରଭୃତି ନାନା ବିଭାଗକୁ ତାହା ସ୍ପର୍ଶ କରିଥିଲା । ସେ ରାଧାନାଥଙ୍କୁ ଅନୁସରଣ କରି ଲେଖିଥିଲେ—'ନଗର' କାବ୍ୟ ଏବଂ ମୁଗଧର୍ମର ଅନୁରୋଧରେ "ଅଦ୍ଭୁତ ପରିଣାମ" ଉପନ୍ୟାସ । ମାତ୍ର ତାଙ୍କର ପ୍ରତିଭା ପ୍ରତିଫଳିତ ହୋଇଥିଲା ଗବେଷଣା ପ୍ରବନ୍ଧ ଏବଂ ଜୀବନ ଚରିତ ଆଲୋଚନାରେ । ତାଙ୍କର କେତୋଟି ସ୍ମରଣୀୟ

ଆଲୋଚନା ପ୍ରବନ୍ଧ ମଧ୍ୟରୁ—କୃଷ୍ଣଙ୍କ ମଧୁସୂଦନ, ଅଭିମନ୍ୟୁ ସାମନ୍ତସିଂହାର, ସାରଳା ଚରିତ, କର୍ମଯୋଗୀ ଗୌରୀଶଙ୍କର, ଅଚ୍ୟୁତାନନ୍ଦ, ଦୀନକୃଷ୍ଣ ଦାସ, ଉତ୍କଳ ପତ୍ରିକା, ଧ୍ୱନ୍ୟାତ୍ମକ ଭାଷା, ଭାଷା ରହସ୍ୟ, ଓଡ଼ିଆ ଭାଷାର ମୂଳ, ଓଡ଼ିଆ ପୋଥି, ଶବ୍ଦ ରହସ୍ୟ, ଓଡ଼ିଆ ବର୍ଣ୍ଣ ଓ ତାହାର ଉଚ୍ଚାରଣ, ନରସିଂହଦେବଙ୍କ ତାମ୍ରଶାସନ, ଭୁବନେଶ୍ୱର ଶିଳାଲିପି, ଜଗନ୍ନାଥ ଶିଳାଲିପି, ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ ଇତ୍ୟାଦି ବିଷୟରେ କୃଷ୍ଣବିହାରୀ ଦାଶ ଉଲ୍ଲେଖ କରିନାହାନ୍ତି । ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ କେତୋଟି ପ୍ରବନ୍ଧ ହେଲା—କର୍ମୀ ପୁରୁଷର ଅନୁଭୂତି (ଉତ୍କଳ ସାହିତ୍ୟ, ୧୭୧୧, ୧୭୧୩), ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳ (ଉ.ସା. ୧୭୧୪), ଚୀନରେ ଭାରତ (ଉ.ସା. ୧୭୧୧୦), ଇଂରେଜ ଆଗମନ (ଉ.ସା. ୧୦।୫), ଚକଡ଼ାରେ କାଣ୍ଡେ (ଉ.ସା. ୨୨।୮) । ୧୯୦୩ ସାଲର 'ଉତ୍କଳ ସାହିତ୍ୟ'ର ଏକାଧିକ ସଂଖ୍ୟାରେ ମୃତ୍ୟୁଞ୍ଜୟ ଲେଖିଥିଲେ "ଓଡ଼ିଆ ଶବ୍ଦର ଚର୍ଚ୍ଚା ।" ଉତ୍କଳ ସାହିତ୍ୟର ଅଠରବର୍ଷ ନବମ ସଂଖ୍ୟାଠାରୁ ତ୍ରୟୋଦଶ ସଂଖ୍ୟାଯାଏ ଧାରାବାହିକ ପ୍ରକାଶିତ ହୋଇଥିଲା କୃଷ୍ଣଙ୍କ ମଧୁସୂଦନ । ସେହିପରି ସେହି ପତ୍ରିକାର ଅଠରବର୍ଷ ପ୍ରଥମ ସଂଖ୍ୟାଠାରୁ ଅଷ୍ଟମ ସଂଖ୍ୟା ପର୍ଯ୍ୟନ୍ତ ଧାରାବାହିକ ପ୍ରକାଶିତ ହୋଇଥିଲା "ଅଭିମନ୍ୟୁ ସାମନ୍ତସିଂହାର" । ଏହି ଆଲୋଚନା-ପ୍ରବନ୍ଧଗୁଡ଼ିକ ହେଉଛି ଓଡ଼ିଆ ସମାଲୋଚନା ସାହିତ୍ୟର ଅରୁଣୋଦୟ । ଏଥିରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କର ପାଣ୍ଡିତ୍ୟ, ଅନୁସନ୍ଧିତ୍ସା, ତୁଳନାତ୍ମକ ବିଗ୍ରହ ଏବଂ ମୌଳିକ ଅନୁଶୀଳନର ପରିଚୟ ମିଳିଥାଏ ।

ବ୍ୟାସକବି ଫକୀରମୋହନଙ୍କ ମୃତ୍ୟୁରେ 'ଉତ୍କଳ ସାହିତ୍ୟ'ର ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶିତ ହୋଇଥିଲା । ସେଥିରେ ମୃତ୍ୟୁଞ୍ଜୟ "ସ୍ୱର୍ଗତ ଫକୀରମୋହନ" (ଉ.ସା. ୨୨।୪) ପ୍ରବନ୍ଧରେ ଏକ ଚମତ୍କାର ଅନୁଭୂତି ପ୍ରକାଶ କରିଛନ୍ତି । ଫକୀର-ମୋହନଙ୍କ କବିତ୍ୱର ସ୍ଫୂର୍ତ୍ତି କୃଷ୍ଣଲୀଳା ଗୀତ ଶ୍ରବଣରୁ ହୋଇଥିଲା । ୧୭।୧୮ ବର୍ଷ ବୟସରେ କୃଷ୍ଣଲୀଳା ଗୀତ ଶୁଣି ସେଥିରୁ ଗୋଟିଏ ଗୋଟିଏ ଗୀତ ଗାଇବା ଦ୍ୱାରା ତାଙ୍କର ପଦ୍ୟଲେଖା ପ୍ରତି ମନ ଯାଇଥିଲା । ତତ୍ପରେ ସେ ଫୁଲ, ପତଙ୍ଗ ବା ପକ୍ଷୀ ଯେତେବେଳେ ଯାହା ଦେଖୁଥିଲେ, ତାକୁ ଦେଖି ମନ ଇଚ୍ଛାରେ ଗୋଟିଏ କବିତା ହଠାତ୍ ଲେଖି ପକାଉଥିଲେ । ମନଇଚ୍ଛା ଏହିପରି ଅଜସ୍ର ଲେଖି ଚାଲିଯିବା ତାଙ୍କର ଜୀବନରେ ସ୍ୱଭାବସିଦ୍ଧ ହୋଇପଡ଼ିଥିଲା । ସେ ପ୍ରଥମ ପ୍ରଥମରେ ଯେଉଁ କବିତା ଲେଖୁଥିଲେ ତାହା ପରମବନ୍ଧୁ ରାଧାନାଥଙ୍କୁ ପଢ଼ି ଶୁଣାଉଥିଲେ । ମାତ୍ର ସେ କବିତା ଲେଖୁ ନ ଥିବାର ଦେଖି ଦିନେ ଦୁଃଖ କରି କହିଥିଲେ— "ଦେଖ ରାଧାନାଥ, ମୁଁ କବିତା ଲେଖୁଅଛି, ଏ ମୋର ଭୁଲ । ତୁମେ ନ ଲେଖୁଛ, ଏ ତୁମ୍ଭର ଭୁଲ । କାରଣ ତୁମେ ଯେପରି ଇଂରାଜୀ ଆଉ ସଂସ୍କୃତ ଭଲ ଜାଣ,

ସେଥିରେ ତୁମ୍ଭର କବିତା ଲେଖିଲେ ଭଲ ହୁଅନ୍ତା । ଏହି କଥାରେ ରାଧାନାଥ ଉତ୍ତର ଦେଇଥିଲେ, "ଆଚ୍ଛା ହେଉ, ଏଣିକି ପଦ୍ୟ ଲେଖିବ ।"

ଏହାପରେ ରାଧାନାଥ ବଙ୍ଗଳାରେ କବିତା ଲେଖିଲେ ଏବଂ ବନ୍ଧୁ ଦାମୋଦର ପ୍ରସାଦ ଦାସଙ୍କ ସାହାଯ୍ୟରେ କଲିକତାରେ 'କବିତାବଳୀ-୧ମ ଖଣ୍ଡ' ପ୍ରକାଶିତ ହେଲା । ରାଧାନାଥଙ୍କ କବିତ୍ୱ-ସାଧନାର ଆଦ୍ୟ ପ୍ରେରଣାଦାତା ଫକୀର-ମୋହନ, ଏହାହିଁ ପ୍ରମାଣିତ ହେଉଅଛି ।

'ଇଂରେଜ ଆଗମନ' ପ୍ରବନ୍ଧରେ ୧୯୦୪ ସାଲରେ କର୍ଣ୍ଣେଲ ହାର୍କଟ ରାଜ୍ୟ ଶାସନର ଯେଉଁ ସନନ୍ଦ ପ୍ରଚାର କରିଥିଲେ; ତାହାର ଅବିକଳ ବକ୍ତବ୍ୟ ପାଠ କଲେ ତତ୍କାଳୀନ ଶାସନ ବ୍ୟବସ୍ଥାର ପରିଚୟ ମିଳିଥାଏ । "ଜମୀଦାରାନ ଓ କାନୁନଗୋୟାନ୍ ଓ ଚଉଧୁରାୟାନ୍ ଓ ମକଦମାନ୍ ଓ ସରବରାକାରାନ୍ ଓ ଝଣ୍ଟାଇତାନ୍ ଓ ରଏତାନ୍ ମହାଲତ୍ ଚକଲେ ବନ୍ଦର ବାଲେଶ୍ୱର ଖୋଦାବନ୍ଦ ଏସୁବାଚ୍ଛେ ଲେଖାଗଲା କର୍ଣ୍ଣେଲ ହାର୍କଟ ସାହେବ ବାହାଦୂର ଓ ଜନ୍ ମିଲ ବଲ ସାହେବ ବାହାଦୂର ମୁଲ୍ଲୁଆର କାରସୁଟେବ ଉଡ଼େଶେ କଟକ ବମର୍ଜି ବ ହୁକୁମ ହଜୁର ଗଭର୍ଣ୍ଣର ଜେନେରାଲ ବାହାଦୂର ଖଜଣା ବକସ୍ତା ଅମଲ ମହଙ୍କେ । ଯେ କିଛି ତୁମ୍ଭମାନଙ୍କଠାରେ ଥିବ, ମାଫ କରାଗଲା ଓ ଯେ କେହି ମରହଟ୍ଟା ତରଫ ଫୌଜଦାର ଓ ଜଗର ଅମଲ ସାହେବମାନଙ୍କ ହଜୁରରେ ନାଲିସ କରିବ ମଞ୍ଜୁର ନାହିଁ । ବର୍ତ୍ତିମାନରେ ଏ ମୁଲକ କୁମ୍ପାନି ଅଙ୍ଗରେଜ ବାହାଦୂରଙ୍କର ହେଲା । ଯେ କେହି କାହାର ଉପରେ ଜୁଲୁମ କରିବ ସରକାରର ନାଲିସ କରିବ । ଉଆଜିବ ତଜବୀଜରେ ତାହାର ଗୌର ପରସ୍ତୀ ହୋଇବ—ତୁଳମାସ ଦ୨୫ନ ସନ ୧୨୧୧ ସାଲେ ମଜୁମଦାର ଓ ଭୁୟାଁ ଓ ଜମିଦାରାନ୍ ପ୍ରଗନେ ଦଶମଲମ ମାଲୁମ ଯେ ଇସ୍ତିହାରନାମା ସରକାରରୁ ସାଦର ହେଲା । ଆପଣ ଓ୍ୱକବ ହୋଇ ଆପଣା ଆପଣା ସରହଦରେ ସମସ୍ତ ରଏତମାନଙ୍କୁ ଓ୍ୱକବ କରାଇବ । ଯେବେ ନ କରାଇବ ଆଇନ ବୋମର୍ଜି ବ ସଜା ପାଇବ ।—ଲଏମ୍ବର ୧୦, ସନ ୧୮୦୩ ଇଃସନ ।" (ଉ.ସା. ୨୧୫)

ସେହିପରି "ଚକାଡ଼ାରୁ କାଣ୍ଡେ" ପଣ୍ଡିତ ମୃତ୍ୟୁଞ୍ଜୟଙ୍କର ଆଉ ଏକ ଆବିଷ୍କାର । "ମାଦଳାପାଞ୍ଜି" ପରି ଏହାର ମଧ୍ୟ ଐତିହାସିକ ଗୁରୁତ୍ୱ ରହିଛି । ପୁରାଣ ସାହିତ୍ୟ ଯୁଗରେ ଏହି ଗଦ୍ୟଲେଖାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ଏହି ପ୍ରସଙ୍ଗରେ ପଣ୍ଡିତ ମୃତ୍ୟୁଞ୍ଜୟ ଲେଖିଥିଲେ—"ପ୍ରାପ୍ତ ପୁସ୍ତକ ଖଣ୍ଡି କଟକ କିଲ୍ଲାନ୍ତର୍ଗତ ଶ୍ରୀ ପ୍ରସନ୍ନ ପୁରୁଷୋତ୍ତମପୁର ଆଠ ସାହିର ମଧ୍ୟସ୍ଥିତ ପୂର୍ବଖଣ୍ଡି ଉତ୍ତର

ରାଜ ତୋଡ଼ାରମଲ୍ଲ ସାହୁ ମହାଜନ ଗୁରୁଦାସ ଚଉଧୁରୀଙ୍କ କର୍ତ୍ତୃକ ଲିଖ ପ୍ରତ୍ନତତ୍ତ୍ୱାନୁ-ରାଗୀ ଆର୍ତ୍ତତ୍ରାଣ ମିଶ୍ରଙ୍କଠାରୁ ପ୍ରାପ୍ତ ତାଳପତ୍ର ପୋଥି—ଏହା ଗଜପତି ରାଜଦଣ୍ଡ ଶାସନର ଏକ ପ୍ରକାର ଇତିହାସ ମାଦଳାପାଞ୍ଜି ଅନୁକରଣରେ । ଅନଙ୍ଗଭୀମ-ଦେବଙ୍କ ଅମଳରୁ ମାଦଳାପାଞ୍ଜି ଚଳିତା ପୁରୁଷୋତ୍ତମ ଦେବଙ୍କ ସମୟରୁ ହୋଇଛି । କାରଣ ଏଥିରେ ଅଛି ମଙ୍ଗଳକାମନା କରି—"କପିଳମୁନି ଚନ୍ଦ୍ର୍ୟମାନ ନାରାୟଣାମାବତାର ସୂର୍ଯ୍ୟବଂଶ ପ୍ରସୂତ ବୀରଶ୍ରୀ ପୁରୁଷୋତ୍ତମଦେବ ଚକ୍ରବର୍ତ୍ତୀ ଜୟତୁ ।" ପୁନଶ୍ଚ "କପିଳେନ୍ଦ୍ରସ୍ୟ ସୂନୋର୍ବୀର ଶ୍ରୀ ପୁରୁଷୋତ୍ତମ ଦେବସ୍ୟ ସର୍ବାଂପଦୋ ବିନଶ୍ୟନ୍ତୁ ।" (ଉ.ସା. ୨୧।୮)

ଉତ୍କଳ ସାହିତ୍ୟ (୨୭।୪)ରେ ମୃତ୍ୟୁଞ୍ଜୟଙ୍କର 'ବିଚିତ୍ର ରାମାୟଣ' ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଐତିହାସିକ ହଣ୍ଟର ଓ ତାରିଣୀଚରଣ ରଥ କବି ବିଶ୍ୱନାଥଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବବର୍ତ୍ତୀ କାଳର ବୋଲି ନିର୍ଦ୍ଦେଶ କରିଥିଲାବେଳେ ରଥେ ତାଙ୍କୁ ପରବର୍ତ୍ତୀ ସମୟର ବୋଲି ପ୍ରମାଣ କରି ଲେଖିଥିଲେ—"ଏହି ସମସ୍ତ ଘଟଣା ଦୃଷ୍ଟିରେ ଆମ୍ଭମାନଙ୍କର ବିଶ୍ୱାସ ହେଉଅଛି କବି ବିଶ୍ୱନାଥ ଦ୍ୱିତୀୟ ଦିବ୍ୟସିଂହଦେବଙ୍କ ସମୟରେ ଅର୍ଥାତ ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ବିଦ୍ୟମାନ ଥିଲେ ।" ଗବେଷକ ରଥଙ୍କର ବହୁ ଗବେଷଣା ପ୍ରବନ୍ଧ ସେ କାଳରେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପ୍ରଦତ୍ତ ତାଲଚେର ପୁରସ୍କାର ପ୍ରାପ୍ତ ହୋଇଥିଲା । (ମୁକୁର ୧।୨) ପତ୍ରିକାରେ ରଥଙ୍କ ଲିଖିତ "ପ୍ରାଚୀନ ଓଡ଼ିଆ ସାହିତ୍ୟ" ସ୍ଥାନିତ ହୋଇ ସାହିତ୍ୟର ଇତିହାସ ବିଷୟରେ ନୂତନ ସନ୍ଦେଶ ବହନ କରିଥିବା ଜଣାଯାଏ ।

ଏକଦା ତରୁଣ ବୟସରେ ରଥେ "ଚତୁଷ୍ପାଠୀ" ଶୀର୍ଷକ ଏକ ପ୍ରବନ୍ଧ 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧ ପାଠ କରି କବି ରାଧାନାଥ ଲେଖକଙ୍କୁ ପ୍ରଶଂସା କରିବା ସହିତ ଆଶୀର୍ବାଦ କରିଥିଲେ । ଅଧ୍ୟାପକ ଗୋପାଳ ଚନ୍ଦ୍ର ମିଶ୍ରଙ୍କ "ମୃତ୍ୟୁଞ୍ଜୟ ରଥ ଜୀବନୀ"ରୁ ଜଣାଯାଏ ଯେ ରଥେ ନାଗାନନ୍ଦ, କଥାସରିତ ସାଗରର କିୟଦଂଶ ଅନୁବାଦ ଓ ଢେଙ୍କାନାଳ ଇତିହାସ ପ୍ରଣୟନ କରିଥିଲେ । ପରିତାପର ବିଷୟ ଏହି ଲେଖାଗୁଡ଼ିକ ଏବେ ମଧ୍ୟ ସଂକଳିତ ହୋଇ ନାହିଁ । ସେ ଶତାଧିକ ପ୍ରବନ୍ଧ ପ୍ରକାଶ କରିଥିଲେ । ତାହା ମଧ୍ୟ ଆଲୋକକୁ ଆସିପାରି ନାହିଁ । ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେଙ୍କ ଅନୁରୋଧରେ ସେ "ରାଧାନାଥ ଜୀବନୀ" ଲେଖିବା ଆରମ୍ଭ କରିଥିଲେ । ଏଥିପାଇଁ ସେ କେତେ ପରିଶ୍ରମ କରିଥିଲେ ତାହା ରାଧାନାଥଙ୍କ ସୁଯୋଗ୍ୟ ପୁତ୍ର ଶଶିଭୂଷଣ ରାୟଙ୍କ "ମୃତ୍ୟୁଞ୍ଜୟ—ଶୋକସ୍ମୃତି" (ଉ.ସା. ୨୮।୧) ପ୍ରବନ୍ଧରୁ ଜାଣିହୁଏ । ତାହା ଥିଲା

ଏହିପରି—"ପଣ୍ଡିତେ ! କବିଷୁରୁ ରାଧାନାଥଙ୍କର ବିସ୍ତୃତ ଓ ପରିପୂର୍ଣ୍ଣ ଜୀବନଚରିତ ଲେଖିବାକୁ ତୁମ୍ଭେ ବିଗତ ୧୨ ବର୍ଷ ହେଲା ନାନା ଉପାଦାନ ସଂଗ୍ରହ କରୁଥିଲ । ଦୁଇ ତିନିଟି ଅଧ୍ୟାୟ ମଧ୍ୟ ଲେଖିଥିଲ । ସମଗ୍ର ଜୀବନଚରିତ ପ୍ରାୟ ଛ' ସାତ ଶହ ପୃଷ୍ଠା ବ୍ୟାପୀ ହୋଇଥାନ୍ତା । ମାତ୍ର ଅଉ ତାହା କାହାରିଠାରୁ ବାହାରିବ ନାହିଁ ପରା !! ଲୋକେ କେବଳ ବକ୍ତୃତା ଫମ୍ପା ଚିତ୍କାରରେ କହି ଉଠିବେ, ଅନେକ ଲୋକ ଅନେକ ଉଦ୍ୟମ କରିବେ, ମାତ୍ର ସେ ପବିତ୍ର ଭୂମ ତ୍ୟାଗର ଆଉ କାହାର ନାହିଁ, ଏହା ଦୃଢ଼ ବିଶ୍ୱାସର ଅନ୍ତର୍ଭୂମିରେ ଦଣ୍ଡାୟମାନ ହୋଇ ମୁଁ କହିପାରେ ।" ମୃତ୍ୟୁଞ୍ଜୟ ଅକାଳରେ ମୃତ୍ୟୁବରଣ କରିବାରୁ ରାଧାନାଥ ଜୀବନୀ ଆଲୋକକୁ ଆସିପାରିଲା ନାହିଁ । ଓଡ଼ିଆ ସାହିତ୍ୟରେ ଏହି ଅଭାବ ଅପୂରଣୀୟ ହୋଇଗଲା ।

'ଉତ୍କଳ ସାହିତ୍ୟ ସମାଜ' ଓଡ଼ିଶାର ପ୍ରାଚୀନତମ ସାହିତ୍ୟ ଅନୁଷ୍ଠାନ । ଏହାର ଜନ୍ମ ସମ୍ପର୍କରେ 'ଉତ୍କଳ ସାହିତ୍ୟ' (୮।୯୦)ରେ କେତେକ ବିବରଣୀ ପ୍ରକାଶ ପାଇଥିଲା । ଉତ୍କଳ ଭାଷା ଓ ସାହିତ୍ୟର ଅନୁଶୀଳନ ନିମିତ୍ତ ୧୮୯୩ ସାଲ ଡିସେମ୍ବର ମାସରେ କଟକଠାରେ "ଆଲୋଚନା ସଭା" ପ୍ରତିଷ୍ଠିତ ହେଲା ଏବଂ ତାହା କେବଳ କଟକର କେତେଜଣ ଶିକ୍ଷା ବିଭାଗୀୟ ଏବଂ ଟ୍ରେନିଂ ସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ଆବଦ୍ଧ ଥିଲା । କଟକର କେତେକ ସ୍ଥାନୀୟ ବ୍ୟକ୍ତିଙ୍କ ପରାମର୍ଶ କ୍ରମେ ପୂର୍ବୋକ୍ତ ଆଲୋଚନା ସଭା ପ୍ରଶସ୍ତତର ଭିତ୍ତିରେ ସ୍ଥାପିତ ହୋଇ ୧୯୦୩ ସାଲର ମେ' ମାସ ୭ ତାରିଖରେ "ଉତ୍କଳ ସାହିତ୍ୟ ସମାଜ" ରୂପରେ ସଂପ୍ରସାରିତ ହେଲା । ପ୍ରାଚୀନ ଏବଂ ଆଧୁନିକ ଉତ୍କଳ ସାହିତ୍ୟର ଆଲୋଚନା ଏବଂ ଉତ୍କଳ ଭାଷା ଓ ସାହିତ୍ୟର ଉନ୍ନତିଚିନ୍ତା ଏ ସଭାର ଉଦ୍ଦେଶ୍ୟ ବୋଲି ଘୋଷଣା କରାଯାଇଥିଲା ।

କ୍ଷଣଜନ୍ମା ସାରସ୍ୱତ ସାଧକ ମୃତ୍ୟୁଞ୍ଜୟ ଥିଲେ କର୍ମଯୋଗୀ । ଏହି ଅଳ୍ପକାଳ ମଧ୍ୟରେ ତାଙ୍କର ସାହିତ୍ୟ ସାଧନା ଏବଂ ସାମାଜିକ ସ୍ୱୀକୃତି ଥିଲା ଅନନ୍ୟ ସାଧାରଣ । ଓଡ଼ିଆ ପ୍ରବନ୍ଧ ଓ ଗବେଷଣା ସାହିତ୍ୟର ଅନ୍ୟତମ ଆଦ୍ୟ ପ୍ରବର୍ତ୍ତକ ଭାବରେ ସେ ଚିରସ୍ମରଣୀୟ ହୋଇ ରହିବେ ।

---

ଅବସରପ୍ରାପ୍ତ ଅଧ୍ୟକ୍ଷ,
ଖ୍ରୀଷ୍ଟ କଲେଜ, କଟକ ।

# ଉତ୍କଳଙ୍କ ମଧୁସୂଦନ

ମୃତ୍ୟୁଞ୍ଜୟ ରଥ

ଗତ ଅର୍ଦ୍ଧଶତାବ୍ଦୀରେ ଯେଉଁ ମହାତ୍ମାଙ୍କ ଭଗବତ୍ ପ୍ରେମ ଏ ଉତ୍କଳରେ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇଅଛି, ଉତ୍କଳୀୟମାନଙ୍କ ଶିକ୍ଷା, ଚରିତ୍ର ଓ ସଦ୍ଧର୍ମାନୁରାଗର ଉନ୍ନତିକଳ୍ପେ ଯେ କଠୋର ତପସ୍ୟା ସାଧନ କରିଅଛନ୍ତି, ଯାହାଙ୍କ ସଂଯମଶୁଦ୍ଧ ମହନୀୟ ଚରିତ୍ର ପ୍ରଭାବରେ ଉତ୍କଳର ଅନେକ ଅନେକ ଶିଷ୍ୟାନୁଶିଷ୍ୟଙ୍କ ଜୀବନମାର୍ଗ ପରିବର୍ତ୍ତିତ ଓ ଆଲୋକିତ ହୋଇଅଛି, ଯାହାଙ୍କ ଧର୍ମାନୁପ୍ରାଣିତ ଏକନିଷ୍ଠ ସାହିତ୍ୟସେବା ଫଳରେ ଆଧୁନିକ ଉତ୍କଳ ସାହିତ୍ୟକୋଷ ଅପୂର୍ବ ଦୀପ୍ତି ଏବଂ ପୁଷ୍ଟି ଲାଭ କରିଅଛି, ସେହି ପୁଣ୍ୟାତ୍ମା ସ୍ୱର୍ଗତ ମଧୁସୂଦନଙ୍କ ଗୁଣକୀର୍ତ୍ତନ ଏ ଲେଖନୀର ଅତୀତ, ଏ କ୍ଷୀଣପ୍ରାଣରେ ଅବସନ୍ନ ଏବଂ ଏ କ୍ଷୁଦ୍ର ଶକ୍ତିର ଅସାଧ୍ୟ ହେଲେହେଁ ନୈଷଧକାବ୍ୟବର୍ଣ୍ଣିତ "ବାଗ୍‌ଜନ୍ମ ବୈଫଲ୍ୟମସହ୍ୟଶଲ୍ୟଂ ଗୁଣାଧିକେ ବସ୍ତୁନି ମୌନିତା ଚେତ୍" ଏହି ଉକ୍ତିଟି ସ୍ମରଣ କରି ପ୍ରତ୍ୟବାୟଭାଗୀ ହେବା ଭୟରେ ଯଥାଜ୍ଞାତ ଯତ୍‌କିଞ୍ଚିତ୍ ତାହାଙ୍କ ସମ୍ବନ୍ଧରେ ପ୍ରକାଶ କରିବାକୁ ପ୍ରୟାସୀ ହେଉଅଛି । "ଯାହାଙ୍କ ଯୋଗେ ଏ ଜୀବନ ଧନ୍ୟ ହୋଇଅଛି, ଯାହାଙ୍କୁ ଗୁରୁ ରୂପେ ଲାଭକରି ଗୃହଜୀବନ ମୂଲ୍ୟବାନ ହୋଇଅଛି, ତାହାଙ୍କ ପୁଣ୍ୟଚରିତ ଆଜି ଯଥାଶକ୍ତି କୀର୍ତ୍ତନ କଲେ ଏ ଜୀବନ ଆହୁରି କୃତକୃତ୍ୟ ହେବ" ମଣି ମୁଁ ଏ କ୍ଷୁଦ୍ର ପ୍ରବନ୍ଧରେ ମଧୁସୂଦନଙ୍କ ଜୀବନର ସ୍ଥୂଳ ଇତିହାସ ପ୍ରଦାନ କରୁଅଛି ।

## ସ୍ଥାନ, ଜନ୍ମ ଓ ବଂଶ ପରିଚୟ :

ବ୍ରିଟିଶ ଅଧିକାର ପୂର୍ବେ ଉତ୍କଳ ଅର୍ଦ୍ଧଶତାବ୍ଦୀକାଳ ମହାରାଷ୍ଟ୍ର ଜାତିର ଶାସନାଧୀନ ଥିଲା, ଏକଥା ପ୍ରାୟ ସମସ୍ତେ ଅଳ୍ପାଧିକ ଜାଣନ୍ତି । ସେ ସମୟ ମଧ୍ୟରେ ଅଥବା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ମହାରାଷ୍ଟ୍ର ଦେଶରୁ ବିଶେଷତଃ ନାଗପୁର ଅଞ୍ଚଳରୁ ଅନେକ ଲୋକ ଦଳଶଃ ଉତ୍କଳକୁ ଆସି ବସତି ବିସ୍ତାର କରିବାକୁ ଲାଗିଲେ । କିନ୍ତୁ ସେ ସମସ୍ତେ ସ୍ଥାୟୀ ଅଧିବାସୀ ହୋଇ ରହିଲେ ନାହିଁ । ଅଳ୍ପକାଳ ପରେ ମହାପରାକ୍ରମ ବ୍ରିଟିଶ ଜାତିର ଏ ଦେଶରେ ପ୍ରବେଶ ଦେଖି ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । କେବଳ ଯେଉଁମାନେ ବୃଦ୍ଧ ଓ ଅସମର୍ଥ ହୋଇ ପଡ଼ିଥିଲେ ଏବଂ ଧର୍ମପିପାସା ବଳବତୀ ଥିବାରୁ ଜଗନ୍ନାଥ ଦର୍ଶନ ବା ଶ୍ରୀକ୍ଷେତ୍ରପ୍ରାପ୍ତିର ଆଶା ପୋଷଣ କରିଥିଲେ, ସେହିମାନେ ପୁଣ୍ୟଭୂମି

ଉତ୍କଳ ତ୍ୟାଗ କରିବାକୁ ମନ ବଳାଇଲେ ନାହିଁ । ଏହିପରି ପ୍ରାୟ ଶତାଧିକ ମରହଟ୍ଟା ଏ ଦେଶରେ ରହିଗଲେ । ଆମ୍ଭମାନଙ୍କର ମଧୁସୂଦନ ଏହି ଶ୍ରେଣୀର ଏକ ବଂଶକୁ ଅଲଙ୍କୃତ କରିଅଛନ୍ତି । ତାଙ୍କର ପିତାମହ ସଦାଶିବ ରାଓ ଏବଂ ମାତାମହ ଭରତ ରାଓ ପ୍ରଭୃତି କେତେଜଣ ବ୍ରାହ୍ମଣ ମରହଟ୍ଟା ଛତ୍ରିଶ ସୁଖ ନଗରରେ ବାସ ସ୍ଥାପନ କରିଥିଲେ । ସେତେବେଳେ ଅବଶ୍ୟ ସେମାନଙ୍କ ମାତୃଭାଷା ହିନ୍ଦୀ ଥିଲା, କିନ୍ତୁ ପଶ୍ଚାତ୍ ସେମାନେ ସେତେବେଳେ ଏ ଦେଶ ଭାଷା ଓଡ଼ିଆକୁ ଉତ୍ତମରୂପେ ମାତୃଭାଷା କରିନେଲେ, ସେହିଦିନୁଁ ସେମାନଙ୍କୁ ଓଡ଼ିଆ ବୋଲି ଗଣନା କରାଯାଉ ଅଛି । ସଦାଶିବ ରାଓ ଜଣେ ତେଜସ୍ୱୀ ପୁରୁଷ ଥିଲେ । ତାହାର ଗୋଟିଏ ଦୃଷ୍ଟାନ୍ତ ଏହି ଯେ, ଏକମାତ୍ର ପୁତ୍ର ଭାଗୀରଥି ରାଓ ବାଲ୍ୟକାଳରେ କିଛି ଶିକ୍ଷା ପାଇ ସେତେବେଳେ ତାହା ବଳରେ ପ୍ରଥମେ ପ୍ରଥମେ କଚେରୀରୁ କିଛି ଉପାର୍ଜନ କଲେ ତାହା ପ୍ରାୟ ପିତାଙ୍କ ହସ୍ତକୁ ଯାଉ ନ ଥିଲା । ପୁତ୍ରର ଅପବ୍ୟୟରେ ଅସନ୍ତୁଷ୍ଟ ହୋଇ ସେ ଏହି ଦୋଷ ସଂଶୋଧନ ଲାଗି ବାରମ୍ବାର ଚେଷ୍ଟା କରି ମଧ୍ୟ ସଫଳକାମ ନ ହେବାରୁ ଅଗତ୍ୟା ଉତ୍ତରକାଳରେ ପୁତ୍ରଠାରୁ ଅନ୍ତରରେ ରହିଲେ । ଏହିପରି ପ୍ରାୟ ଦଶବର୍ଷ ଅତୀତ ନ ହେଉଣୁ ସଦାଶିବଙ୍କର ଚରମକାଳ ଆସି ଉପସ୍ଥିତ ହେଲା । ସେତେବେଳେ ସଦାଶିବ ପୁତ୍ରମୁଖ ଦର୍ଶନ ଲାଗି ବଡ଼ ବ୍ୟାକୁଳ ହୋଇ ପଡ଼ିଲେ । ଏହା ଦେଖି ସହଚରମାନେ ପୁତ୍ରଙ୍କ ନିକଟକୁ ସନ୍ଦେଶ ପ୍ରେରଣ କରନ୍ତେ, ଭାଗୀରଥି ବ୍ୟଗ୍ରଚିତ୍ତରେ ପିତାଙ୍କ ଆଡ଼କୁ ଅଗ୍ରସର ହେଲେ । ପିତାଙ୍କ ନିକଟରେ ଉପସ୍ଥିତ ହେବାର କିୟତ୍ ହସ୍ତ ଦୂରରୁ ଜଣେ ପାର୍ଶ୍ୱଚର ହଠାତ୍ ଉତ୍କର୍ଣ୍ଣିତ ସଦାଶିବଙ୍କୁ କହିଦେଲେ "ଆପଣଙ୍କ ବେଟା ଆଗେସ୍ଥା" । ଏହି କଥା ଶୁଣିବାମାତ୍ରେ ପୁଣ୍ୟାତ୍ମା ସଦାଶିବ, ପୁତ୍ର ଗୃହଦ୍ୱାରର ପ୍ରଥମ ପାବଚ୍ଛରେ ପଦ ନ ଦେଉଣୁ "କାହିଁ ହେ" କହୁଁ କହୁଁ ପୁତ୍ରମୁଖ ଗୃହିଁ ତତ୍କ୍ଷଣାତ୍ ଦ୍ୱାରଦେଶରେ ଟଳି ପଡ଼ିଲେ । ଏ ମରଣ ଭାଗୀରଥିଙ୍କର ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଓ ଶିକ୍ଷାପ୍ରଦ ହୋଇଥିଲା । ସେହିଦିନୁଁ ସେ ଜୀବନକୁ ନିର୍ଦ୍ଦୋଷ ଶୁଦ୍ଧ ପଥରେ ଚଲାଇବାକୁ ଲାଗିଲେ । ସଦାଶିବଙ୍କ ହୃଦୟରେ ପୁତ୍ରବାତ୍ସଲ୍ୟ କିପରି ପ୍ରଚ୍ଛନ୍ନଭାବରେ ରହିଥିଲା, ତାହା ଏହି ଘଟଣାରୁ ସ୍ପଷ୍ଟ ପ୍ରତୀତ ହେଉଅଛି । ପୁତ୍ରକୁ ନିର୍ଦ୍ଦୋଷ ଚରିତ୍ର କରିବା ଲାଗି ତାହାଙ୍କର ପ୍ରାଣ ଏପରି ବ୍ୟାକୁଳ ହୋଇ ପଡ଼ିଥିଲା ଯେ, ଶେଷରେ ସେ ଅନନ୍ୟୋପାୟ ହୋଇ ଏକପ୍ରକାର ଚିରବିଚ୍ଛେଦ ଶାସ୍ତି ଦ୍ୱାରା ପୁତ୍ରଙ୍କୁ ମହାଶିକ୍ଷା ପ୍ରଦାନ କରିଥିଲେ । ବର୍ତ୍ତମାନ ସଂସାରଭାର ଭାଗୀରଥିଙ୍କ ମସ୍ତକରେ ପଡ଼ିବାରୁ ସେ ଆପଣାକୁ ବଡ଼ ଅସହାୟ ଓ ଅସମର୍ଥ ମନେକଲେ । କିନ୍ତୁ ଜଣକ ଯୋଗେ ସେ "ସାମାନ୍ୟ ଚପରାଶିକର୍ମ ଜୀବିକା ହେଲେହେଁ" ସଂସାରୀ ଜୀବନର ପ୍ରଥମ ଭାଗ ବଡ଼ ସୁଖରେ କଟାଇ ନେଲେ । ସେ ଜଣକ ଆଉ କେହି ନୁହନ୍ତି, ତାହାଙ୍କର

ଗୃହଲକ୍ଷ୍ମୀ ମଧୁସୂଦନଙ୍କ ଜନନୀ ଅମ୍ବିକା ଦେବୀ । ଅମ୍ବିକା ଦେବୀଙ୍କ ପ୍ରାୟ ପତିପ୍ରାଣା ସତୀ ରମଣୀ ଏ ଯୁଗରେ ବିରଳ ଦେଖାଯାନ୍ତି । ଯେଉଁମାନେ ଅମ୍ବିକାଙ୍କୁ ଦେଖିଅଛନ୍ତି, ସେମାନେ ପ୍ରାୟ କହିଥାନ୍ତି ଯେ ଅମ୍ବିକା ରୂପରେ ଗୁଣରେ ସାକ୍ଷାତ୍ ଲକ୍ଷ୍ମୀ ଥିଲେ । ତାହାଙ୍କର ପତିଭକ୍ତି ଓ ଅପତ୍ୟବାତ୍ସଲ୍ୟ କେତେଦୂର ଗଭୀର ଥିଲା, ତାହା ବର୍ତ୍ତମାନ ପ୍ରସଙ୍ଗରୁ ପାଠକମାନେ ଅନୁମାନ କରିପାରିବେ । ଏଠାରେ ଦୁଇଗୁଟି କଥାରେ ଅମ୍ବିକାଙ୍କର ବଂଶପରିଚୟ ଦେବା ସଙ୍ଗତ ମନେ କରୁଅଛୁ । ପୂର୍ବକଥିତ ଭରତ ଓ ରାମ ରାଉ ନାମକ ଦୁଇ ମରହଟ୍ଟା କ୍ଷତ୍ରିୟ(୧) ସଦାଶିବ ରାଉଙ୍କର ସମକାଳୀନ ଥିଲେ । ଏ ଦୁହିଁଙ୍କର ଆଠ ପୁତ୍ର ଓ ଦୁଇ କନ୍ୟା ଥିଲେ । ଭରତଙ୍କ ଜ୍ୟେଷ୍ଠ କନ୍ୟାଙ୍କର ନାମ ସରସ୍ୱତୀ । ଏ ଦୁଇ କନ୍ୟା ମଧ୍ୟରେ କନିଷ୍ଠା ଅମ୍ବିକା ଅଧିକ ଗୁଣବତୀ ଥିଲେ । ଏହି ଲକ୍ଷ୍ମୀରୂପିଣୀ ରମଣୀଙ୍କ ପାଣିଗ୍ରହଣ ଉତ୍ତାରେ ରଘୁନାଥଙ୍କର ସାଂସାରିକ ଅବସ୍ଥାର ମଧ୍ୟ ଉନ୍ନତି ହୋଇଥିଲା । ପୁରୀର ତଦାନୀନ୍ତନ ମାଜିଷ୍ଟ୍ରେଟ ମାନନୀୟ ଡ୍ରମଣ୍ଡ ସାହେବ ତାଙ୍କ କର୍ମରେ ସନ୍ତୁଷ୍ଟ ହୋଇ ମାସିକ ୧୬ ଟଙ୍କା ବେତନରେ ତାଙ୍କୁ ଅଠରନଳା ଫାଣ୍ଡିର ଜମାଦାର ପଦରେ ନିଯୁକ୍ତ କଲେ । ସେତେବେଳେ ଜଗନ୍ନାଥ-ଯାତ୍ରି କର ସଂଗ୍ରହ ନିମିତ୍ତ ଏହି ଫାଣ୍ଡିଟି ନୂତନ ବସିଥିଲା । ଏହା ପ୍ରାୟ ଊନବିଂଶ ଶତାବ୍ଦୀର ଠିକ ମଧ୍ୟଭାଗର ଘଟଣା । ଏହାର କିଛି କାଳ ପରେ ଅମ୍ବିକା ସତ୍ପୁତ୍ରଧାରିଣୀ ହେଲେ । ୧୮୫୩ ଖ୍ରୀଷ୍ଟାବ୍ଦ(୨) ଜାନୁଆରି ମାସ ୨୧ ତାରିଖ ସୋମବାର ଶ୍ରୀପଞ୍ଚମୀ ଦିନ ଲକ୍ଷ୍ମୀ ସରସ୍ୱତୀ(୩) ଉଭୟଙ୍କର ନେତ୍ରୋତ୍ସବ ପୁତ୍ର ରଘୁନାଥ କୁଟୀରର ସୂତିକାଗୃହ ଆଲୋକିତ କଲେ । ମଧୁକାଳର ଏହି ମଧୁମୟ ପ୍ରବେଶ ଦିବସରେ ଜନ୍ମଗ୍ରହଣ କରିଥିବାରୁ ପିତା ବାଛି ବାଛି ନବଜାତ ପୁତ୍ରର ବିପଦବନ୍ଧୁ 'ମଧୁସୂଦନ' ନାମ ରଖିଲେ । ଏହି ପୁତ୍ର ସ୍ୱୀୟ ଜୀବନକାଳ ମଧ୍ୟରେ ନିଜ ନାମକୁ ସାର୍ଥକ କରି ଯାଇ-ଅଛନ୍ତି । ଆଉ କଥା କେତେକ ଥାଉ ବିରହି-ପ୍ରେମିକସମ୍ଭୂଳ ବଙ୍କୁତ ରୁଚିର ଅନୁକୂଳ ପ୍ରାଚୀନ ମଧୁ ବା ବସନ୍ତକୁ ସେ କିପରି ନିଷ୍ପୀଡ଼ନ କରିଅଛନ୍ତି, ତାହା ମଧୁସୂଦନଙ୍କ "ନବବସନ୍ତ ଭାବନା" କବିତାରୁ ସୁସ୍ପଷ୍ଟ ପ୍ରକାଶ ପାଏ । ଏହି ନବଜାତ ଶିଶୁକୁ ଯେ ଦେଖିବାକୁ ଆସୁଥାନ୍ତି, ସେ କ୍ଷଣକାଳ ତାହାର ଦିବ୍ୟବପୁ ନିର୍ନିମେଷ ନୟନରେ ଦେଖି ଆନନ୍ଦ ପ୍ରକାଶ କରନ୍ତି । ସ୍ନେହମୟୀ ଜନନୀ ପରମ

---

(୧) ଏମାନଙ୍କ ଘରେ ବହୁକାଳଯାଏ କ୍ଷତ୍ରିୟ ବ୍ୟବହାର୍ଯ୍ୟ ଢାଲ, ବର୍ଚ୍ଛା, ବନ୍ଧୁକ ଆଦି ରହିଥିଲା ।

(୨) ୧୭୭୩ ଶକାବ୍ଦ, ସନ ୧୨୬୮ ସାଲ ମାଘ ୧୫ ଦିନ ।

(୩) ଜ୍ୟେଷ୍ଠା ଭଗିନୀ ସରସ୍ୱତୀଙ୍କର କୌଣସି ସନ୍ତାନ ନ ଥିଲା ।

ସ୍ନେହ ଓ ଯତ୍ନ ସହକାରେ ଏ ଶିଶୁର ଲାଳନ ପାଳନ କରିବାକୁ ଲାଗିଲେ । ପ୍ରାୟ ଚାରିବର୍ଷ ଅତୀତ ନ ହେଉଣୁ ପୁତ୍ରବତ୍ସଳା ଅମ୍ବିକା ଦେବୀ ଆଉ ଗୋଟିଏ ପୁତ୍ର-ସନ୍ତାନ ଲାଭ କଲେ । ନୀଳାଚଳବାସୀ ପିତା ନୀଳାଚଳପତିଙ୍କ ନାମାନୁସାରେ ତାଙ୍କ ନାମ ଜଗନ୍ନାଥ ରଖିଲେ । ଦ୍ୱିତୀୟ ପୁତ୍ର ଜନ୍ମର ପ୍ରାୟ ଦୁଇବର୍ଷ ପରେ ଗୋଟିଏ କନ୍ୟା ପ୍ରସବ କରି ତହିଁର ସେହି ସୂତିକା ରୋଗରେ ଅମ୍ବିକା ଦେବୀ ଇହଧାମ ତ୍ୟାଗ କଲେ । ମୃତ୍ୟୁକାଳରେ ସେ ପତିଙ୍କର ପାଦୋଦକ ପାନ କରି ତାହାଙ୍କୁ ଦୃଢ଼ଭାବରେ ଆଲିଙ୍ଗନ କରିଥିଲେ ଏବଂ ପୁତ୍ରରତ୍ନ ଦୁଇଟିକୁ ହୃଦୟରେ ସ୍ଥାପନ କରିବାକୁ କହି ପଶ୍ଚାତ୍ ପତିପାଦପଦ୍ମରେ ତାହା ସମର୍ପଣ କରିଥିଲେ । (୧) ସୁତରାଂ ପାଞ୍ଚବର୍ଷ ବୟସରେ ମଧୁସୂଦନ ଜନନୀବିହୀନ ହେଲେ । ବିପଦ ଆସିଲେ କେବେହେଁ ଗୋଟିଏ ହୋଇ ଆସେନାହିଁ । ତାହା ପଛରେ ମେଷପଲ ପରି ବହୁତ ଗୋଡ଼ାଇଥାଏ । ଏବେ ଭାଗୀରଥିଙ୍କର ସେହି ଦଶା ହେଲା । ଏକେ ଗୃହଭଙ୍ଗ, ଦ୍ୱିତୀୟରେ ଶିଶୁସନ୍ତାନ ପାଳନ, ସେଥିରେ ପୁଣି ସ୍ଥାନପରିବର୍ତ୍ତନ ଆଦେଶ । ଏହି ସମୟରେ ଯାତ୍ରିକର ସଂଗ୍ରହ ଉଠିଯିବାରୁ ପୂର୍ବୋକ୍ତ ଅଠରନଳା ଫାଣ୍ଡି ରହିଲା ନାହିଁ । ତେଣୁ ଭାଗୀରଥି ରାଓ ଗୋପ ଥାନାର ଜମାଦାର(୨) ପଦରେ ନିଯୁକ୍ତ ହୋଇ ପୁରୀ ତ୍ୟାଗ କରିବାକୁ ବାଧ୍ୟ ହେଲେ । ଗୋପକୁ ଯିବା ପୂର୍ବେ ସେ ଶିଶୁପୁତ୍ରଦ୍ୱୟଙ୍କ ପାଳନ ବିଷୟରେ ନିତାନ୍ତ ବ୍ୟାକୁଳ ହୋଇ ତଦୀୟ ଶ୍ୟାଳକ ନାରାୟଣ ରାଓଙ୍କ ହସ୍ତରେ ସେମାନଙ୍କ ଭାର ଅର୍ପଣ କରିଥିଲେ । ଅମ୍ବିକା ଦେବୀ ମଧ୍ୟ ମରଣମୁହୂର୍ତ୍ତରେ ଦ୍ୱିତୀୟ ପୁତ୍ରଟିକୁ ପ୍ରିୟତମ ଭ୍ରାତା ନାରାୟଣ ରାଓଙ୍କୁ ସମର୍ପଣ କରିବା ପାଇଁ ଅନୁରୋଧ କରିଥିଲେ । ସୁତରାଂ ଶିଶୁ ଜଗନ୍ନାଥଙ୍କ ଜୀବନରକ୍ଷା ଭାର ମାତୃସ୍ଥାନୀୟା ମାଉଳାଣୀଙ୍କ ହସ୍ତରେ ରହିଲା ।

---

(୧) ଧରି ମୋ ପିତାଙ୍କ ପଦ      କହନ୍ତି ମା ଗଦଗଦ,
ରଖ ରଖ ଏହି ଧନ ମୋର ହୃଦୟରେ ହେ ।
ଏହା କହି ସମର୍ପିଣ ସନ୍ତାନ ଦୁଇଟି ହେ, ପିତାଙ୍କ ଚରଣେ,
ଆହା ପୁଣ୍ୟ ଅଶ୍ରୁ ଜଳେ      ଧୋଇ ବଦନ କମଳେ
ମୁଦିଲେ ନୟନ ମାତା ଅନ୍ତିମ ଶୟନେ ହେ ।

(୨) ସେତେବେଳେ ଆଜିକାଲି ପରି ସବ୍‌ଇନସ୍‌ପେକ୍ଟର ନ ଥିଲେ । ଜମାଦାର-ମାନେ ଏହି କାର୍ଯ୍ୟ କରୁଥିଲେ । ଗୋଟିଏ ଲାଲ ପଗଡ଼ି, ଖଣ୍ଡେ ସବୁଜା ଚପକନ ଓ ତଦୁପରି କାବା ଏମାନଙ୍କର ପୋଷାକ ଥିଲା । ଏହିସବୁ ଜମାଦାରମାନେ ଜଣେ ଦାରୋଗାଙ୍କ (ଆଧୁନିକ ଇନସ୍‌ପେକ୍ଟର) ଅଧୀନରେ ରହୁଥିଲେ ।

## ବାଲ୍ୟଜୀବନ ଓ ଶିକ୍ଷା :

ଗୋପରେ ସରଳପ୍ରାଣ ଭଗୀରଥି ରାଓ ତତ୍କାଳୀନ ଦାରୋଗା ସୁବଳଚନ୍ଦ୍ର ବୋଷଙ୍କ ଅଧୀନରେ କାର୍ଯ୍ୟ କଲେ । ଦାରୋଗାବାବୁ ସହଯୋଗିଙ୍କ ଶାନ୍ତ ସ୍ୱଭାବ ଓ ନମ୍ର ବ୍ୟବହାରରେ ଅତୀବ ସନ୍ତୁଷ୍ଟ ହୋଇ ତାହାଙ୍କୁ ସୁହୃଦ ରୂପେ ଗ୍ରହଣ କଲେ । ଅଳ୍ପକାଳ ମଧ୍ୟରେ ଦାରୋଗା ବାବୁଙ୍କ ସହିତ ଭଗୀରଥିଙ୍କର ଘନିଷ୍ଠତା ଜନ୍ମିଗଲା । କିନ୍ତୁ ଗୋପରେ ବର୍ଷାଧିକ କାଳ ଅତୀତ ନ ହେଉଣୁ ଭଗୀରଥି ଦିନେକର ଅଦ୍ଭୁତ ସ୍ୱପ୍ନରେ ବିଚଳିତ ହୋଇ ପଡିଲେ । ତାହା ଏହି—ନିଶୀଥ ସମୟରେ ତାହାଙ୍କର ପ୍ରିୟତମା ପତ୍ନୀ ଶୟନକକ୍ଷକୁ ଆସି କହିଲେ, "ମୁଁ ତୁମ୍ଭ ପାଖରେ ପ୍ରାଣପିତୁଳା ଦୁଇଟିକ ଗୁଡ଼ୁ ଦେଇ ଆସିଲି ଏହିପରି ହତାଦର ହେବା-ପାଇଁ ? ତୁମ୍ଭେ ଯଦି ନ ଦେଖିବ, ମୁଁ ଜଗନ୍ନାଥଟିକ ନେଇଯିବି ।" ଏହି ସ୍ୱପ୍ନ-ଦର୍ଶନରେ ପୁତ୍ରବତ୍ସଳ ଭଗୀରଥି ରାଓ ନିତାନ୍ତ ମର୍ମାହତ ହୋଇ ପରଦିନ ପ୍ରଭାତରେ କାର୍ଯ୍ୟକ୍ଷେତ୍ରର ବନ୍ଧୁ ସୁବଳ ବାବୁଙ୍କ ନିକଟରେ ବାଳକବତ ବିଳାପ କରିବାକୁ ଲାଗିଲେ ଏବଂ ସ୍ୱପ୍ନ ପ୍ରକାଶ କରି କହିଲେ, "ମୁଁ ଏହିକ୍ଷଣି ପୁଣ୍ଡ ଯିବି । ଯଦି ସେଥିରେ କୌଣସି ବାଧା ହୁଏ, ତାହା ହେଲେ, ଏ ଚାକିରି ଗଲେ ସୁଦ୍ଧା ମୋହର ଦୁଃଖ ବା ଭୟ ନାହିଁ ।" ସୁବଳ ବାବୁ ସେଠାରେ ସପରିବାର ଅବସ୍ଥାନ କରୁଥିଲେ ତେଣୁ ସେ ବନ୍ଧୁଙ୍କର ଶିଶୁସନ୍ତାନ ପାଳନରେ ଆଶ୍ୱାସ ଦେଇ ସେଠାକୁ ପିଲମାନଙ୍କୁ ଆଣିବାକୁ କହିବାରୁ ପୁତ୍ରବତ୍ସଳ ଭଗୀରଥି ରାଓ ଅବିଳମ୍ବେ ପୁଣ୍ଡ ଯାତ୍ରା କଲେ ଏବଂ ସେଠାରୁ ପୁତ୍ରଦ୍ୱୟଙ୍କୁ ସଙ୍ଗରେ ଘେନି ଆସିଲେ । ତେତେବେଳେ ପୁଣ୍ଡଠାରୁ ଗୋପକୁ ଆସିବାର ପଥ ଆଜିକାଲି ପରି ସୁଗମ ନ ଥିଲା । ଯଦିବା ବଳଦଗାଡ଼ି କଷ୍ଟରେ ଆସି ପାରୁଥିଲା, ତଥାପି ସେ ଗାଡ଼ିରେ ନେଲେ ଶିଶୁଙ୍କର ଅତ୍ୟନ୍ତ କଷ୍ଟ ହେବ ଅନୁମାନ କରି ଯେଉଁ ଉପାୟରେ ସେମାନଙ୍କୁ ଆଣିଥିଲେ, ତାହା ପାଠକ-ମାନଙ୍କୁ ବଡ଼ କୌତୂହଳଜନକ ବୋଧ ହେବ । ସେ ଆଗେ ଦୁଇଟି ଟୋକାଇରେ କିଛି କିଛି ଧାନ ପୂରାଇ ସମତଳ କରିଦେଲେ ଏବଂ ତାହା ଉପରେ ଲୁଗାର ବିହଳ ଶେଯ କରି ପୁତ୍ରଦ୍ୱୟଙ୍କୁ ବସାଇ ଦେଲେ । ଜଣେ ବାହକ ଭାର କରି ଭଗୀରଥିଙ୍କର ଏହି ଦୁଇ ରତ୍ନକୁ ଗୋପକୁ ବୁହାଇ ଆଣିଲା । ଏହି ଗୋପରେ ଆଉ ପୁତ୍ର-ଦ୍ୱୟଙ୍କ ଯତ୍ନରେ କୌଣସି ତ୍ରୁଟି ହେଲା ନାହିଁ ଏହିଠାରେ ସପ୍ତମ ବର୍ଷରେ ମଧୁସୂଦନଙ୍କର ବିଦ୍ୟାରମ୍ଭ ହେଲା । ସ୍ଥାନୀୟ ଚାଟଶାଳୀରେ ଜଣେ ଅବଧାନଙ୍କ ନିକଟରୁ ସେ ଏ ଦେଶପ୍ରଚଳିତ ଖଡ଼ିପାଠ ଅଭ୍ୟାସ କଲେ । ଶୋଧି, ଓଡ଼ାଙ୍କ, ହରଗୁଣ, କୋଠା, ନଳ, ଜୟବିଜୟ ପ୍ରଭୃତି ଯେଉଁ ସବୁର ନାମ ଆଧୁନିକ ବିଦ୍ୟାଳୟ ଛାତ୍ରମାନଙ୍କର କର୍ଣ୍ଣଗୋଚର ହୋଇ ନ ଥିବ, ସେହି ସବୁ ନବାଲୋକ-ପ୍ରାପ୍ତ ମଧୁସୂଦନଙ୍କର ପ୍ରାଥମିକ ଶିକ୍ଷା ହୋଇଥିଲା । ପ୍ରାୟ ବର୍ଷେକ ପରେ ମଧୁସୂଦନଙ୍କ

ପିତା ଭୁବନେଶ୍ୱର ଥାନାକୁ ବଦଳି ହୋଇ ଆସିବାରୁ ସେହିଠାରେ ତାଙ୍କର ଶିକ୍ଷାର କସ୍ତ୍ର ସୁବିଧା ହେଲା । ତେତେବେଳେ ଭୁବନେଶ୍ୱରରେ ଗୋଟିଏ ଗଭର୍ଣ୍ଣମେଣ୍ଟ ପ୍ରତିଷ୍ଠିତ ମଧ୍ୟଶ୍ରେଣୀ ବିଦ୍ୟାଳୟ ଥିଲା, ସେଥିରେ (ଓଡ଼ିଆ ପୁସ୍ତକ ଅଭାବରୁ) ବଙ୍ଗଳା ଶିକ୍ଷା ଦିଆ ଯାଉଥିଲା । ମଧୁସୂଦନ ଏଥିରେ ପ୍ରବେଶ ଲାଭକରି ସ୍ୱୀୟ ଅନୁପମ ଗୁଣରେ ତତ୍ରତ୍ୟ ସମସ୍ତ ଛାତ୍ର ଓ ଶିକ୍ଷକଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ସ୍କୁଲର ହେଡ଼ମାଷ୍ଟର ଶ୍ରୀହରି ଭଟ୍ଟାଚାର୍ଯ୍ୟ ମଧୁସୂଦନଙ୍କ ଶିକ୍ଷୋନ୍ନତି ଦେଖି ଉତ୍ତମରୂପେ ବୁଝି ପାରିଥିଲେ ଯେ ଛାତ୍ରଟି ଉଚ୍ଚତର ଶିକ୍ଷା ପାଇବାର ଯୋଗ୍ୟ । କିନ୍ତୁ ପିତାଙ୍କର ଜମାଦାରୀ କର୍ମର ସାମାନ୍ୟ ଆୟ ତାହାଙ୍କ ଉଚ୍ଚଶିକ୍ଷାର ଅନୁକୂଳ ନ ଥିଲା । ମାତ୍ର ସର୍ବଜ୍ଞ ଭଗବାନ ଯାହାର ହୃଦୟକୁ ଜ୍ଞାନଦ୍ୱାରା ଆଲୋକିତ କରିବାକୁ ଇଚ୍ଛା କରନ୍ତି, ଶତ ପାର୍ଥିବ ବିଘ୍ନ ତାହାର ପଥରେ କଣ୍ଟକ ହୋଇ ନ ପାରେ । ଅଚିରେ ମଧୁସୂଦନଙ୍କର ସେ ଶିକ୍ଷାବିଘ୍ନ ଦୂରୀଭୂତ ହୋଇଗଲା । ଏକଦା ସ୍କୁଲ ଇନସ୍‌ପେକ୍ଟର ଉଡ୍ରୋ ସାହେବ ଖଣ୍ଡଗିରି ଦେଖିବାକୁ ଯାଇ ସେଠାରୁ ଭୁବନେଶ୍ୱର ସ୍କୁଲ ପରିଦର୍ଶନ କରିବାକୁ ଗଲେ । ସ୍କୁଲକୁ ଯିବା ପୂର୍ବରୁ ଲୋକ-ବ୍ୟବହାର-କୁଶଳ ଭଗୀରଥି ରାଓ ପରିଭ୍ରାନ୍ତ ସାହେବଙ୍କୁ ଦେଶକାଳୋଚିତ ଅତିଥିସତ୍କାର ଦ୍ୱାରା ପରିତୁଷ୍ଟ କରିଥିଲେ । ସାହେବ ସ୍କୁଲରେ ଉପସ୍ଥିତ ହେଲାକ୍ଷଣି ଶ୍ରେଣୀମଣ୍ଡନ ମଧୁସୂଦନଙ୍କ ମୁଖମଣ୍ଡଳ ଦେଖି ହଠାତ୍ 'କାହାର ପୁଅ' ବୋଲି ହିନ୍ଦୀରେ ପଚାରିଲେ । ସୁଚତୁର ପିତା ପଛେ ପଛେ ଥିବାରୁ 'ସେ ମୋହର ପୁଅ' ବୋଲି ଉତ୍ତର ଦିଅନ୍ତେ ପ୍ରଫୁଲ୍ଲିତ ସାହେବ ଅଧିକରେ ପରିତୁଷ୍ଟ ହୋଇ "ଆଚ୍ଛା ତୁମ୍ଭ ପୁଅକୁ ପରୀକ୍ଷା କରିବା" ବୋଲି ସସ୍ମିତ ମୁଖରେ କେତୋଟି ପ୍ରଶ୍ନ କଲେ । ପ୍ରଥମେ ଭିତ୍ତି ଦେହରେ ଭାରତର ମାନଚିତ୍ର ଦେଖି ସେଥିରୁ କେତୋଟି ଭୌଗୋଳିକ ପ୍ରଶ୍ନ କଲେ । ସେ ପ୍ରତ୍ୟେକର ସଦୁତ୍ତର ପାଇ ସାହେବ ଗଣିତର ଜ୍ଞାନ ପରୀକ୍ଷା କଲେ । ଆଶାନୁରୂପ ଉତ୍ତରରେ ଅତ୍ୟନ୍ତ ସନ୍ତୁଷ୍ଟ ସାହେବ ତାଙ୍କୁ ପୁରୀ ଜିଲ୍ଲା ସ୍କୁଲରେ ପଢ଼ାଇବାକୁ ଉପଦେଶ ଦେଲେ ଏବଂ ଭଗୀରଥିଙ୍କ ଅବସ୍ଥା ଦେଖି 'ପୁରୀ ଜିଲ୍ଲା ସ୍କୁଲରେ ବିନା ବେତନରେ ପାଞ୍ଚବର୍ଷ ପଢ଼ିବା ପାଇଁ' ଖଣ୍ଡିଏ ସାର୍ଟିଫିକେଟ ଲେଖିଦେଲେ । ଏହି ସୁଯୋଗରେ ମଧୁସୂଦନ ହାଇ ସ୍କୁଲରେ ଅଧ୍ୟୟନର ସୁବିଧା ପାଇଲେ । ପୁରୀ ଗଲାବେଳକୁ ତାହାଙ୍କର ବୟସ ୯ ବର୍ଷରୁ ବଳି ପଡ଼ିଥିଲା । ସେଠାରେ ସେ ସହାଧ୍ୟାୟୀମାନଙ୍କୁ ଅଧ୍ୟୟନର ଅପୂର୍ବ ଆଦର୍ଶ ଦେଖାଇଥିଲେ । ଛାତ୍ରମାନେ ଶ୍ରେଣୀରେ ଗଲ୍ପ କରୁଥିଲାବେଳେ ମଧୁସୂଦନ ସେହି ଗହଳ ମଧ୍ୟରେ ଥାଇ ପୁଣି ଅବାଧରେ ପଢ଼ି ପାରୁଥିଲେ । ପଢ଼ିବା ସମୟରେ କେହି ତାହାଙ୍କୁ ଡାକିଲେ ବା କିଛି କହିଲେ ସେ ଅତ୍ୟନ୍ତ ବିରକ୍ତି ପ୍ରକାଶ କରି ପୂର୍ବବତ୍ ସ୍ୱପାଠରେ ଅଭିନିବିଷ୍ଟ ହେଉଥିଲେ । ଏ ଅଧ୍ୟବସାୟ ଗୁଣରେ ସେ

ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଏବଂ 'ଡବଲ୍ ପ୍ରମୋଶନ' ପାଇ (ଗୋଟିଏ ଶ୍ରେଣୀ ଉପର ଶ୍ରେଣୀକୁ ଉଠି) ସ୍ବର ବର୍ଷରେ ଦ୍ୱିତୀୟ ଶ୍ରେଣୀକୁ ଆସିଲେ । ସ୍କୁଲର ତଦାନୀନ୍ତନ ଗୁଣଗ୍ରାହୀ ମାଜିଷ୍ଟ୍ରେଟ ବକ୍‌ସଉଏଲ ସାହେବ ବିଦ୍ୟାଳୟର ପାଠୋନ୍ନତି ଉଦ୍ଦେଶ୍ୟରେ ଏହି ନିୟମ କରିଥିଲେ ଯେ—ପ୍ରତିବର୍ଷ ସେ ପାଞ୍ଚୋଟି ଲେଖାଏଁ ଅଗ୍ରେଷଟିଂ ବିଷୟରେ ୨୦ଟି ପ୍ରଶ୍ନ କରିବେ । ଯେଉଁ ଛାତ୍ର ସେହି ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରଦାନ କରିବ, ସେ ପ୍ରତ୍ୟେକ ପ୍ରଶ୍ନରେ ପାଞ୍ଚଟଙ୍କା ଲେଖାଏଁ ପୁରସ୍କାର ପାଇବ । ମଧୁସୂଦନ ଏହି ଏକଶତ ଟଙ୍କାର ପୁରସ୍କାର ତିନିବର୍ଷ ପାଇଥିଲେ । କେବଳ ଏହି ପୁରସ୍କାର ନୁହେଁ, ତେତେବେଳେ ରମା ବା ରେଉଆର ରାଜା ଉକ୍ତ ସ୍କୁଲକୁ ୪୦।୫୦ ଭରି ପରିମାଣରେ ଗୋଟିଏ ବଡ଼ ରୌପ୍ୟ ପଦକ ପ୍ରଦାନ କରିଥିଲେ । ସେଥିରେ ଏହି ନିୟମ ଥିଲା ଯେ ଯେଉଁ ଛାତ୍ର ସବୁ ଶ୍ରେଣୀରେ ପ୍ରଥମ ହେବ, ସେ ଏହି ପଦକ ପାଇବ ଏବଂ ସାତଦିନ ଘରେ ରଖି ସ୍କୁଲକୁ ଫେରାଇ ଦେବ । କିନ୍ତୁ ତିନିବର୍ଷ ଏକ ଲୋକ ପାଇଲେ ପଦକ ତାହାର ହୋଇଯିବ । ମଧୁସୂଦନ ପ୍ରଥମ ଶ୍ରେଣୀରେ ଥାଇ ଦୁଇବର୍ଷ ଏହି ପଦକ ପାଇଥିଲେ । ତୃତୀୟ ବର୍ଷରେ ମଧୁସୂଦନ ପ୍ରବେଶିକା ପରୀକ୍ଷାରେ ପୁରୀ ଜିଲ୍ଲା ସ୍କୁଲର ସର୍ବପ୍ରଥମ ଛାତ୍ରରୂପେ ଉତ୍ତୀର୍ଣ୍ଣ ହେଲେ ଏବଂ ମାସିକ ଦଶଟଙ୍କା ବୃତ୍ତି ପ୍ରାପ୍ତ ହେଲେ । ସ୍କୁଲରୁ ଚାଲିଯିବାରୁ ଏ ପଦକ ତାହାଙ୍କୁ ଦିଆଯିବ କି ନାହିଁ ନିର୍ଦ୍ଧାରଣ କରୁ କରୁ ପ୍ରାୟ ବର୍ଷେ ଚାଲିଗଲା । ପରବର୍ଷ ହରିକୃଷ୍ଣ ଦାସ ନାମକ ଜଣେ ଛାତ୍ର ଦ୍ୱିତୀୟ ବିଭାଗର ୧୫ ଟଙ୍କା ବୃତ୍ତି ପାଇବାରୁ ଉକ୍ତ ପଦକର ଦାବି କଲେ । କିନ୍ତୁ ଗୁଣଗ୍ରାହୀ ବକ୍‌ସଉଏଲ ସାହେବଙ୍କ ଯୋଗେ ଡିଷ୍ଟ୍ରିକ୍ଟ କମିଟି ସେ ପଦକ ମଧୁସୂଦନଙ୍କୁ ପ୍ରଦାନ କରିବାର ସିଦ୍ଧାନ୍ତ କଲେ । ଏହା ପ୍ରାୟ ୧୮୭୦ ଖ୍ରୀଷ୍ଟାବ୍ଦର କଥା । ଯେଉଁଦିନ ମଧୁସୂଦନ ସେହି ପଦକ ଆଣିବାକୁ ଯିବେ, ସେଦିନ କୌଣସି ଅଜ୍ଞାତନାମା ଛାତ୍ର ଅସୂୟାପରବଶ ହୋଇ ସ୍କୁଲ ଗୃହରେ ଅଗ୍ନି ଲଗାଇ ଦେଲା । ପଦକ ସହିତ ସ୍କୁଲର ସମସ୍ତ ଉପକରଣ ଓ ବହୁବର୍ଷସଞ୍ଚିତ ପୁସ୍ତକମାନ ଭସ୍ମସାତ ହୋଇଗଲା । ଜନନୀଙ୍କ ମୃତ୍ୟୁ ଉତ୍ତାରେ ମଧୁସୂଦନଙ୍କ ଜୀବନରେ ଏ ଦ୍ୱିତୀୟ ଆଘାତ । ପ୍ରଥମ ଆଘାତରେ ସେ ପ୍ରଥମବର୍ଷ ଶକ୍ତିସତ୍ତ୍ୱେ ପ୍ରବେଶିକା ପରୀକ୍ଷା ଦେଇପାରି ନ ଥିଲେ । ଏହି ବର୍ଷ ଉତ୍କଳରେ ୧୮୬୬ ସାଲର ସେହି ଭୀମଦର୍ଶନ ମହାଦୁର୍ଭିକ୍ଷ । ଯାହାର ବର୍ଣ୍ଣନାରେ ଅଦ୍ୟାପି ହୃତ୍କମ୍ପ ଉପସ୍ଥିତ ହୁଏ ! ଯାହାର ଅର୍ଥ 'ନଅଙ୍କ' ସ୍ମରଣରେ ପ୍ରତ୍ୟେକ ହୃଦୟରେ ଦୁଃଖ ପ୍ରବାହ ବୁହେ । ଶତଶତ ଶବ ଓ ନରକଙ୍କାଳ ବାଟ ଘାଟ ସର୍ବତ୍ର ଦେଖି ଦରିଦ୍ର ମଧୁସୂଦନଙ୍କ କୋମଳ ପ୍ରାଣ ତେତେବେଳେ ବିଶୁଷ୍କ ହୋଇ ଯାଉଥିଲା । କିନ୍ତୁ ତେତେବେଳେ ତାହାଙ୍କ ମନର ଅନୁକୂଳ କର୍ମ ମିଳିଥିବାରୁ ସେ କଥାସହି ଆଶ୍ୱାସନା ଲାଭ କରିଥିଲେ । ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍

କଥାଟି ସମସ୍ତଙ୍କ ହାତରେ ହୁଏ ନାହିଁ । ତଦାନନ୍ତନ ସୁପଣ୍ଡିତ ମହନ୍ତ ନାରାୟଣ ଦାସଙ୍କ ଅନୁରୋଧକ୍ରମେ ବଳଦେଓ ସାହେବ ପ୍ରଥମ ଶ୍ରେଣୀର ପ୍ରଥମ ଛାତ୍ର ମଧୁସୂଦନଙ୍କୁ ଦରିଦ୍ର ବା ଦୁର୍ଭିକ୍ଷପୀଡ଼ିତ ବ୍ୟକ୍ତିମାନଙ୍କୁ ଚାଉଳ ବାଣ୍ଟିବା ଭାର ପ୍ରଦାନ କରିଥିଲେ । ଜଣେ ଛାତ୍ରର ଦାୟିତ୍ୱପୂର୍ଣ୍ଣ ସେବାବ୍ରତ ସେ କାଳର ଲୋକଙ୍କୁ ବଡ଼ ନୂତନ ବୋଧ ହୋଇଥିଲା । ମଧୁସୂଦନ ଏହି ସେବକଭାବରେ ଆପଣାକୁ ବଡ଼ କୃତାର୍ଥ ମଣିଥିଲେ ଏବଂ ସେ ବୋଧହୁଏ ଏହି କାଳରେ ଭଗବାନଙ୍କୁ ଭବିଷ୍ୟତ ପାଇଁ ଦରିଦ୍ର ସାହାଯ୍ୟ କରିବାର ଶକ୍ତି ଭିକ୍ଷା କରିଥିଲେ । ଏହିଠାରେ ତାହାଙ୍କର 'ଜୀବେ ଦୟା' ଶିକ୍ଷାର ସୂତ୍ରପାତ ହୋଇଥିଲା । ଏହି ସମୟରୁ ଅର୍ଥାତ୍ ଚତୁର୍ଦ୍ଦଶ ବର୍ଷ ବୟସରୁ ସେ ଯାବଜ୍ଜୀବନ ମତ୍ସ୍ୟ ମାଂସ ଭକ୍ଷଣ ତ୍ୟାଗ କରିଥିଲେ ।

ଏହି ପ୍ରସଙ୍ଗରେ କବିବର ରାଧାନାଥଙ୍କ ସହିତ ମଧୁସୂଦନଙ୍କ ସମ୍ପର୍କ ଉଲ୍ଲେଖଯୋଗ୍ୟ । ଶୁଣଛୁ ରାଧାନାଥ ଯେଉଁ ଘଟଣାରେ ପ୍ରଥମେ ମଧୁସୂଦନଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ, ତାହା ଏହି ପୁରୀ ସ୍କୁଲରେ ଶିକ୍ଷକ ହେବା ପୂର୍ବରୁ ରାଧାନାଥ ଥରେ ଜଗନ୍ନାଥ ଦର୍ଶନକୁ ଯାଇ ଜିଲ୍ଲା ସ୍କୁଲ ଦେଖିବାକୁ ଯାଇଥିଲେ । ସେଠାରେ ଦ୍ୱିତୀୟ ଶ୍ରେଣୀର ନଫର ନାମକ ଗୋଟିଏ ଛାତ୍ର ସ୍ୱପାଠରତ ମଧୁସୂଦନଙ୍କୁ ହାତ ଧରି ଟାଣି ଟାଣି କ'ଣ କହିବାରୁ ସେ ବିରକ୍ତି ପ୍ରକାଶ କରି କହିଲେ "Don't bother me now." ରାଧାନାଥ ଏହା ଦେଖିଲକ୍ଷଣି ବଡ଼ ତେଜସ୍ୱୀ ଛାତ୍ର ମନେ କରି ତାଙ୍କୁ ବାହାରକୁ ଡାକି ଆଣିଲେ ଏବଂ ତାଙ୍କର ପରିଚୟ ସେହିଦିନ ପ୍ରଥମ ଗ୍ରହଣ କଲେ । କେତେ ମାସ ପରେ ପୁଣି ସେ ଉକ୍ତ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଆସିଲେ ଏବଂ ତାହାଙ୍କ ଉପରେ ଭୂଗୋଳ ଓ ଇତିହାସର ଅଧ୍ୟାପନା ଭାର ପ୍ରଦତ୍ତ ହେଲା । ସେ ଏହି ଦୁଇ ବିଷୟରେ ଅଧ୍ୟାପକ ହେଲେହେଁ ପ୍ରିୟତମ ଶିଷ୍ୟ ମଧୁସୂଦନ ପ୍ରଥମ ବର୍ଷ ବିଶ୍ୱବିଦ୍ୟାଳୟର ପରୀକ୍ଷା ଦେଇ ପାରି ନ ଥିଲେ । ତୃତୀୟ ବର୍ଷ ସେହି ସମୟରେ ଯେତେବେଳେ କଠିନ ପୀଡ଼ାଗ୍ରସ୍ତ ହେଲେ, ତେତେବେଳେ ସେ ଥରେ ଗୃହାଗତ ସଦ୍‌ଗୁରୁ ରାଧାନାଥଙ୍କୁ ଆପଣାର ପରୀକ୍ଷାର ଅନ୍ତରାୟଭୂତ ଉପସ୍ଥିତ ଦୁଃଖ ଜଣାଇ କ୍ରନ୍ଦନ କରିବାକୁ ଲାଗିଲେ । ରାଧାନାଥ ତାହାଙ୍କୁ ପରୀକ୍ଷାରେ ସମ୍ପୂର୍ଣ୍ଣ ରୂପେ କୃତକାର୍ଯ୍ୟ ହୋଇ ପାରିବାର ଆଶା ଦେବାରୁ ସେ କେବଳ ଅଙ୍କ ଶିକ୍ଷାଦାନ ଲାଗି ତାହାଙ୍କୁ ଅନୁରୋଧ କଲେ । ରାଧାନାଥ ସେ ପ୍ରସ୍ତାବରେ ସ୍ୱୀକୃତ ହୋଇ ପ୍ରତ୍ୟହ ଗୃହକୁ ଆସି ଅଙ୍କ ଶିକ୍ଷା ଦେବାକୁ ଲାଗିଲେ । ଏହି ସମୟରେ ଉଭୟଙ୍କର ସମ୍ପର୍କ ଗାଢ଼ତର ହେଲା । ସେ ଯେ କେବଳ ଏହି କାଳ ମଧ୍ୟରେ ସୁନିପୁଣ ଭାବରେ ଅଙ୍କ ଶିଖିଉଠିଲେ ତାହା ନୁହେଁ, ଅନ୍ୟାନ୍ୟ ବିଷୟରେ ମଧ୍ୟ ଅଙ୍କୁର ଜନ୍ମାଇଥିଲେ । ରାଧାନାଥ ତାହାଙ୍କୁ ଏଡ଼େ ସ୍ନେହ କରୁଥିଲେ ଯେ, କି ସ୍କୁଲ୍ କି ବାହାର ସର୍ବତ୍ର

ତାହାଙ୍କର ସୁଖ-ସଙ୍ଗ ଲୋଡ଼ୁଥିଲେ । କେତେବେଳେ ଚନ୍ଦ୍ରଭାଗାର ସମୁଦ୍ରକୂଳ, କେତେବେଳେ ସ୍ୱର୍ଗଦ୍ୱାରର ଶ୍ମଶାନ, କେତେବେଳେ ପଣ୍ଡିତାଗ୍ରଣୀ ମହାତ୍ମା ହରିହର ଦାସଙ୍କ ବାସଭବନରେ ଉଭୟଙ୍କର ବହୁକ୍ଷଣ ନାନା ଭାବନା ଓ ଆଲୋଚନାରେ ବ୍ୟୟିତ ହୋଇଥିଲା । ମଧୁସୂଦନ ତାହାଙ୍କ ସଙ୍ଗରେ ଜ୍ୟୋତ୍ସ୍ନାମୟୀ ରଜନୀରେ ଚନ୍ଦ୍ରାଲୋକ ବିଚ୍ଛୁରିତ ମହାସମୁଦ୍ରର ମନୋହାରୀ ରୁଦ୍ର ସୁନ୍ଦର ଦୃଶ୍ୟ ଏବଂ ମହାଶ୍ମଶାନର ବିକଟ ଦୃଶ୍ୟ ଦେଖି ଦେଖି ହୃଦୟରେ ଭାବୁକତାର ଅଙ୍କୁର ଲାଭ କରୁଥିଲେ ଏବଂ ପ୍ରୋକ୍ତ ପଣ୍ଡିତପ୍ରବରଙ୍କ ନିକଟରେ ସଂସ୍କୃତଚର୍ଚ୍ଚା ଓ ଦାର୍ଶନିକ ମତବାଦମାନ ଶ୍ରବଣ କରୁଥିଲେ । ଏହି ଶୁଭ ଯୋଗ ଦିନରୁ ତାଙ୍କର ସାହିତ୍ୟ ପ୍ରତି ଅନୁରାଗ ଜନ୍ମିଲା ।

ଏହାପରେ ତାହାଙ୍କର ଶୁଭ ବିବାହ କର୍ମ ସମ୍ପାଦିତ ହୋଇଥିଲା । ସେ ପୁରୀବାସୀ ବଳରାମ ଜଙ୍କ କନ୍ୟା ସୌଭାଗ୍ୟବତୀ ପଦ୍ମାବାଈଙ୍କର ପାଣିଗ୍ରହଣ କରିଥିଲେ ।

୧୮୬୯ ଅବ୍ଦର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ମାତୃସମା ମାତୃଷ୍ୱସା(୧) ଏବଂ ପ୍ରାଣପ୍ରିୟ ସହୋଦରଙ୍କ ସହିତ କଟକକୁ ଅଧ୍ୟୟନାର୍ଥେ ଆସିଥିଲେ । ତେତେବେଳେ କଟକରେ ରେଭେନ୍‌ସା କଲେଜ ସ୍ଥାପିତ ହୋଇ ନ ଥିଲା । ଏଫ୍. ଏ. ପରୀକ୍ଷା ଦେବାର ସୁବିଧା ନିମିତ୍ତ ଦୁଇଟି ଅଧିକନ୍ତୁ ଶ୍ରେଣୀ ତଦାନୀନ୍ତନ କଟକ ହାଇସ୍କୁଲ ସଂଲଗ୍ନ ଥିଲା । ଶ୍ରୀଯୁକ୍ତ ଚଣ୍ଡୀଚରଣ ବନ୍ଦୋପାଧ୍ୟାୟ ହାଇସ୍କୁଲର ପ୍ରଧାନ ଅଧ୍ୟାପକ ଥିଲେ ଏବଂ ତାହାଙ୍କ ଅଧୀନରେ ରାଜକିଶୋର ବନ୍ଦୋପାଧ୍ୟାୟ, ହରନାଥ ଭଟ୍ଟାଚାର୍ଯ୍ୟ ପ୍ରଭୃତି କେତେଜଣ ଅଧ୍ୟାପକ ଥିଲେ । ସେମାନଙ୍କ ମଧ୍ୟରେ ରାଜକିଶୋର ବାବୁ(୨) ବଙ୍ଗଳାରେ ଜଣେ ସୁଲେଖକ ଏବଂ ଇଂରାଜୀ ଭାଷାରେ ସୁପଣ୍ଡିତ ଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟର ଏମ୍.ଏ.ବି.ଏଲ୍. ଏବଂ ରାୟଚାନ୍ଦ ପ୍ରେମଚାନ୍ଦ ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଠାକୁ ଆସିଥିଲେ । ଦର୍ଶନ ଅଧ୍ୟାପକ ଭଟ୍ଟାଚାର୍ଯ୍ୟ ହରନାଥ ଯେପରି ସୁବିଦ୍ୱାନ ସେହିପରି ମଧ୍ୟ ସୁଚରିତ୍ର ଥିଲେ । ମଧୁସୂଦନ ହାଇସ୍କୁଲରେ ନାମ ଲେଖାଇ ଏହି ଅଧ୍ୟାପକମାନଙ୍କଠାରୁ ଉଚ୍ଚ ଶିକ୍ଷାର ସହାୟସ୍ୱରୂପ ଲାଭ କରିଥିଲେ । ଯେଉଁମାନଙ୍କୁ ଏଠାରେ ସହାଧ୍ୟାୟୀ ରୂପେ ଲାଭ କରିଥିଲେ; ସେମାନଙ୍କ ମଧ୍ୟରେ ପରଲୋକଗତ ଭଗବତୀଚରଣ ରାୟଚୌଧୁରୀ (ଗଞ୍ଜାମର ଭୂତପୂର୍ବ ଡେପୁଟି ଇନସ୍ପେକ୍ଟର), ବିପ୍ରଚରଣ ରାୟଚୌଧୁରୀ

(୧) ତାହାଙ୍କ ବିମାତାଙ୍କ ଭଗିନୀ । ସେ ସ୍ୱୀୟ ସହୋଦରାଙ୍କ ସନ୍ତାନମାନଙ୍କ ଅପେକ୍ଷା ସପତ୍ନୀଗର୍ଭଜାତ ଏହି ଦୁଇ ପୁତ୍ରଙ୍କୁ ଅଧିକ ସ୍ନେହ କରୁଥିଲେ ।

(୨) ବଙ୍ଗଳା 'ନିଭୃତଚିନ୍ତା'(?) ଓ 'କାବ୍ୟବିଳାପ' ଗ୍ରନ୍ଥଦ୍ୱୟ ଏହାଙ୍କଦ୍ୱାରା ବିରଚିତ ।

(ଗଞ୍ଜାମର ଭୂତପୂର୍ବ ସରକାରୀ ଓକିଲ), ଚତୁର୍ଭୁଜ ପଟ୍ଟନାୟକ (ଭୂତପୂର୍ବ ଓଡ଼ିଆ ଟ୍ରାନ୍ସଲେଟର) ଏବଂ ବାବୁ ବଳରାମ ଦାସ (ପେନ୍‌ସନ ପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ) ପ୍ରଧାନ । ଜ୍ୟେଷ୍ଠ ଭଗବତୀ ସ୍ୱଭାବଗମ୍ଭୀର, ଚତୁର୍ଭୁଜ ଚଳଚଞ୍ଚଳ ବା କ୍ଷିପ୍ରସ୍ୱଭାବାପନ୍ନ, ବଳରାମ ରସିକତାପୂର୍ଣ୍ଣ ଏବଂ ମଧୁସୂଦନ ଉନ୍ନତରୁଚି ଓ ଉଚ୍ଚକଥାପ୍ରିୟ ଥିଲେ । ଏପରି ବିଭିନ୍ନ ରୁଚି ସତ୍ତ୍ୱେ ସେମାନେ ଏପରି ସୌହାର୍ଦ୍ଦବଦ୍ଧ ହୋଇଥିଲେ ଯେ କର୍ମକ୍ଷେତ୍ରରେ ପରସ୍ପରଠାରୁ ପୃଥକ୍ ହୋଇ ସୁଦ୍ଧା କେହି କାହାରିକୁ ସେହି ସୁଖମୟ ସ୍ମୃତିରୁ ଅନ୍ତର କରି ନ ଥିଲେ । ସହାଧ୍ୟାୟୀଙ୍କ ସ୍ନେହ ଅପେକ୍ଷା ଅଧ୍ୟାପକ ରାଜକିଶୋର ବାବୁଙ୍କ ସ୍ନେହ ଆହୁରି ଗାଢ଼ତର ଥିଲା । ସେ ଛାତ୍ରମାନଙ୍କୁ ଏତେ ଭଲ ପାଉଥିଲେ ଯେ, କେତେବେଳେ ସେମାନଙ୍କ ସହିତ ପାଠ୍ୟଗ୍ରନ୍ଥ ବ୍ୟତୀତ ନାନା ଗ୍ରନ୍ଥର ଆଲୋଚନାରେ, କେତେବେଳେ ସେମାନଙ୍କ ସହିତ ହାସ ପରିହାସରେ* କେତେବେଳେ ବା ମିଷ୍ଟାନ୍ନ ବିତରଣରେ ନିଯୁକ୍ତ ରହି ଆନନ୍ଦ ପ୍ରକାଶ କରୁଥିଲେ । ରାଜକିଶୋର ବାବୁଙ୍କ ଅଧ୍ୟାପନା ସ୍ୱତନ୍ତ୍ର ପ୍ରକାର ଥିଲା, ସେ ଇଂରାଜୀ ଅଧ୍ୟାପକ ଥିଲେ ସତ୍ୟ, କିନ୍ତୁ ଆଜିକାଲି ପରି ଶ୍ରେଣୀରେ ବସି କେବଳ ଇଂରାଜୀରେ ବ୍ୟାଖ୍ୟାନ ପ୍ରଦାନ କରୁ ନ ଥିଲେ, ଅଧ୍ୟାପନାରେ ତାଙ୍କର ଇଂରାଜୀ, ସଂସ୍କୃତ ଓ ବଙ୍ଗଳା ସବୁ ଭାଷା ଚାଲୁଥିଲା । ସେ ହୋମର ପରେ ବାଲ୍ମୀକି, ବ୍ୟାସ ପରେ ଭର୍ଜିଲ, କେତେବେଳେ ମିଲ୍‌ଟନ ପରେ ମାଇକେଲ (ମେଘନାଦବଧ) ଧରୁଥିଲେ । ରାମାୟଣ, ମହାଭାରତର କଥାମାନ ତାଙ୍କର ଯେପରି ସ୍ମରଣାଧୀନ ଥିଲା, ଏପରି ପ୍ରାୟ ଦେଖାଯାଏ ନାହିଁ । ସେଥିପାଇଁ ସେ ଦିନେ ଦିନେ ନ ପଢ଼ାଇ ଛାତ୍ରମାନଙ୍କୁ ରାମାୟଣ ମହାଭାରତ ବିଷୟରେ ନାନା ପ୍ରଶ୍ନ କରିବାକୁ ଆଦେଶ ଦେଉଥିଲେ ଏବଂ ଛାତ୍ରମାନେ ବିବିଧ ପ୍ରଶ୍ନଦ୍ୱାରା ସେ ମହାସମୁଦ୍ର ମନ୍ଥନ କରି ନାନା ରତ୍ନ ଲାଭ କରୁଥିଲେ । ଦର୍ଶନାଧ୍ୟାପକ ହରିନାଥଙ୍କ ସମ୍ବନ୍ଧରେ ଏଠାରେ କିଛି କହିବା ସଙ୍ଗତ ହେଉଅଛି । ହରିନାଥଙ୍କ ନିର୍ମଳ ଚରିତ୍ର ଏବଂ ପ୍ରଶାନ୍ତ ଭାବ ଦର୍ଶନରେ ଛାତ୍ରମାନଙ୍କର ତାହାଙ୍କ ପ୍ରତି ଅଧିକତର ଭୟ ଓ ଭକ୍ତିର ସଞ୍ଚାର ହୋଇଥିଲା । ମଧୁସୂଦନଙ୍କର ଛାତ୍ରମାନେ ତାହାଙ୍କୁ ଯେପରି ଚକ୍ଷୁରେ ଦେଖୁଥିଲେ, ସେମାନେ ହରିନାଥଙ୍କୁ ଠିକ୍ ସେହିପରି ଚକ୍ଷୁରେ ଦେଖୁଥିଲେ । ସେ ଶ୍ରେଣୀରେ ପ୍ରବେଶ କଲେ ଶ୍ରେଣୀ ତତ୍‌କ୍ଷଣାତ ନିସ୍ତବ୍ଧଭାବ ଧାରଣ କରେ । ତେଣୁ ହରିନାଥଙ୍କ ଦାର୍ଶନିକ ଉପଦେଶ ପ୍ରତ୍ୟେକ ଅଭିନିବିଷ୍ଟ ଛାତ୍ରଙ୍କ ହୃଦୟରେ ଉର୍ବରା ଭୂମିରେ ରୋପିତ ବୀଜ ପରି କାର୍ଯ୍ୟକାରୀ ହେଉଥିଲା । ସେ ଯାହା ହେଉ,

* ଛାତ୍ରମାନଙ୍କ ସହିତ ମଧ୍ୟେ ମଧ୍ୟେ ମଧୁସୂଦନଙ୍କର ଯେଉଁ ପରିହାସକୁଶଳତାର ଅଭିନୟ ଦେଖା ଯାଉଅଛି, ତାହା ବୋଧହୁଏ ଏହି ରାଜକିଶୋର ବାବୁଙ୍କଠାରୁ ପ୍ରାପ୍ତ ।

ଏହି ଅଧ୍ୟାୟିମାନଙ୍କ ମଧ୍ୟରେ ମଧୁସୂଦନ ସବୁ ବିଷୟରେ ଶ୍ରେଷ୍ଠ ଏବଂ ବିଚକ୍ଷଣ ଥିଲେ । ତାହାଙ୍କର ବହୁତୋମୁଖୀ ଧୀଶକ୍ତି ଦର୍ଶନରେ ଅଧ୍ୟାପକବର୍ଗ ପରମ ପରିତୋଷ ଲାଭ କରିଥିଲେ । ଏହିପରି ସନ୍ତୋଷ ମଧ୍ୟରେ ସେ ଦୁଇବର୍ଷ ଅଧ୍ୟୟନ କରି ୧୮୭୧ ଅବ୍ଦର ଏଫ. ଏ. ପରୀକ୍ଷାରେ ସୁଖ୍ୟାତି ସହକାରେ ଉତ୍ତୀର୍ଣ୍ଣ ହେଲେ ଏବଂ ତହିଁ ଉତ୍ତାରେ ବି. ଏ. ପଢ଼ିବା ଲାଗି କଲିକତା ଯିବାକୁ ମନ ବଳାଇଥିଲେ । କିନ୍ତୁ ପୁତ୍ରବତ୍ସଳ ପିତାଙ୍କର ସନବନ୍ଧ ବାରଣ କଲିକତା ନ ଯିବାର ପ୍ରଧାନ କାରଣ ହେଲା । ଏଫ୍. ଏ ଶ୍ରେଣୀରେ ପଢ଼ୁଥିବା ବେଳେ ସେ ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଭଲ ଇଂରାଜୀ କବିତାର ଉତ୍କଳାନୁବାଦ କରୁଥିଲେ । ତାଙ୍କ ଦେଖା-ଦେଖି ବଳରାମ ବାବୁ ପରେ 'କୁମାରସମ୍ଭବ'ର ଅନୁବାଦ କରିଥିଲେ । କିନ୍ତୁ ମଧୁସୂଦନଙ୍କ ଅନୁବାଦ ଅତି ଉତ୍କୃଷ୍ଟ ଏବଂ ଅନନ୍ୟ ଧରଣର । ଅନୁବାଦରେ ସେ ଯେପରି ଉତ୍କର୍ଷ ପ୍ରଦର୍ଶନ କରିଛନ୍ତି, ତାହା ବଙ୍ଗଦେଶର ଅନେକ ସୁଲେଖକଙ୍କ-ଠାରେ ଦୁର୍ଲଭ । ବଳରାମବାବୁଙ୍କ ସଙ୍ଗୀ ପାଇ ଏହି କାଳରେ ତାଙ୍କର ପ୍ରାଚୀନ ସାହିତ୍ୟ ଆଲୋଚନାର କିଞ୍ଚିତ୍ ସୁବିଧା ହୋଇଥିଲା । ସେ ତାଳପତ୍ର ପୋଥିରୁ ବୈଦେହୀଶ ବିଳାସର ଚର୍ଚ୍ଚା କରିଥିଲେ । ଏଥିପୂର୍ବେ ସେ ଅବଶ୍ୟ ଅନ୍ୟମାନଙ୍କ ପରି କେବଳ ବଙ୍ଗଳା ସାହିତ୍ୟ ଆଲୋଚନା କରିଥିଲେ । ତେତେବେଳେ ମଧ୍ୟ ମିସନରୀକୃତ 'ନୀତିବୋଧ' ଓ 'ହିତୋପଦେଶ' ଏହି ଦୁଇଖଣ୍ଡ ଛଡ଼ା ଅନ୍ୟ କୌଣସି ଛପା ଓଡ଼ିଆ ପୁସ୍ତକ ନ ଥିଲା । ଖେଳରେ କାଳକ୍ଷେପଣ କରିବା ଦୂରେ ଥାଉ, ସେ ଖେଳ କିପରି ତାହା ଜାଣି ନ ଥିଲେ । ସେ ଅନେକ ସମୟ ଚିତ୍ ହୋଇ ଶୋଇ ବକ୍ଷରେ ପୁସ୍ତକ ରଖି ପଢ଼ୁଥିଲେ । ଏହିପରି ଅଭ୍ୟାସଦ୍ୱାରା ତାଙ୍କର ଦୃଷ୍ଟିଶକ୍ତି ହ୍ରାସପ୍ରାପ୍ତ ହୋଇଯିବାର ସେ ଅନେକ ସମୟରେ ପ୍ରକାଶ କରିଥାନ୍ତି ଏବଂ ଏ ପ୍ରକାର ଅଭ୍ୟାସରୁ କ୍ଷାନ୍ତ ହେବାପାଇଁ ସମୟ ସମୟରେ ଛାତ୍ରମାନଙ୍କୁ ଉପଦେଶ ଦେଇଥାନ୍ତି । ଛାତ୍ର ଜୀବନରେ ତାହାଙ୍କର ଗଭୀର ଧର୍ମାନୁରାଗ ଥିଲା, ତାହା ପରବର୍ତ୍ତୀ ପ୍ରସଙ୍ଗରେ ଉଲ୍ଲେଖ କରାଯିବ ।

## ଧର୍ମାନୁରାଗ ଓ ବ୍ରାହ୍ମସମାଜ :

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି ଯେ "ତୁଳସୀ ଦୁଇ ପତ୍ରରୁ ବାସେ" ଅର୍ଥାତ୍ ଯେ ଯାହା ହେବ, ତାହା ବାଲ୍ୟଜୀବନରୁ ପ୍ରକାଶ ପାଏ । କୌମାର ଅବସ୍ଥାରୁ ମଧୁସୂଦନଙ୍କର ଧର୍ମପ୍ରାଣତା ପ୍ରକଟିତ ହୋଇଥିଲା । ଦଶ ବର୍ଷ ବୟସରୁ ସେ ପ୍ରତ୍ୟହ ଦେବଦେବୀ ଦର୍ଶନକୁ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ବୋଲି ବୁଝିଥିଲେ । ଶୁଣିଲେ ପାଠକମାନେ ଆଶ୍ଚର୍ଯ୍ୟ ମଣିବେ ଯେ, ତେତେବେଳେ ସେ ଗୃହର ଅଦୂରବର୍ତ୍ତୀ ବାଳାମ୍ବର ମହାଦେବଙ୍କୁ ଦର୍ଶନ ନ କଲେ ଜଳ ଗ୍ରହଣ କରୁ ନ ଥିଲେ । କେବଳ ଦୂରତା ହେତୁରୁ ପ୍ରତ୍ୟହ ବଡ଼ଦେଉଳକୁ ଯାଇ ନ ପାରି ପ୍ରତି

ରବିବାର ଜଗନ୍ନାଥ ଦର୍ଶନ କରୁଥିଲେ । ଏହି ବଡ଼ଦେଉଳ ତାହାଙ୍କର ଧର୍ମୋନ୍ମୁଖ ହୃଦୟରେ ବଡ଼ପଣର ବୀଜ ରୋପଣ କରିଥିଲା । ଯାହାଙ୍କର ମନ ଏକ ସମୟରେ କ୍ଷୁଦ୍ର ପରିମିତ ପାର୍ଥିବ ବାନାମ୍ବର ଲିଙ୍ଗକୁ ବଡ଼ ମାନିଥିଲା, ସେ ପୁଣି ପରେ କେବଳ ସେଠାରେ କାହିଁକି ସମସ୍ତ ପୃଥିବୀରେ ତୃପ୍ତ ନ ହୋଇ ଏକ ଅଖଣ୍ଡ ଅପରମେୟ ଅପାର୍ଥିବ ବସ୍ତୁ ଆଡ଼କୁ ଧାବିତ ହେଲେ । ଆଲୋକରଶ୍ମି ପ୍ରାୟ ମନୁଷ୍ୟର ମନ ଏହି କ୍ଷୁଦ୍ର ମଳିନ ଶରୀରାବରଣରେ ଆବଦ୍ଧ ଥିଲେହେଁ ତାହା ଅଧାରଣୀୟ ଦୂରକୁ ଗତି କରି ଅଧାରଣୀୟ ବସ୍ତୁ ଧାରଣ କରେ । ପାର୍ଥିବ ଆଲୋକର ଗତି ଏକ ସେକେଣ୍ଡରେ ଲକ୍ଷ କୋଶ, ଅପାର୍ଥିବ ମନର ଗତି ବା କିଏ କଳନା କରିବ ? ଆମ୍ଭମାନଙ୍କର ଏହି କବିଙ୍କ ଭାଷାରେ ଏଠାରେ କହୁଅଛୁଁ—

"ଆହା କିବା ଅଦ୍ଭୁତ ମନର ଗତି,
ଅତିକ୍ରମନୀୟ ଅଟେ ତାର ଶକତି,
କ୍ଷଣମାତ୍ରକେ ମନ କରେ ଦର୍ଶନ
ଏହି ଅପରସୀମ ବିଶ୍ୱଭୁବନ ।"

ମନର ଏହି ଅବସ୍ଥା ପାଇବାକୁ ହେଲେ ଆବରଣ ସଂସ୍କାର ସର୍ବାଗ୍ରେ ଆବଶ୍ୟକ । ପ୍ରାଚୀନ ଦାର୍ଶନିକ ପଣ୍ଡିତମାନେ ମନକୁ ଏକ କୋଷ ବୋଲି ନିର୍ଦ୍ଦେଶ କରି-ଅଛନ୍ତି । ଯଥାର୍ଥରେ ଏହି ମନୋମୟ କୋଷ ଜଡ଼ ଆଲୋକର କାଚ-ଆବରଣ ସ୍ୱରୂପ । କାଚ-ଆବରଣକୁ ନିର୍ମଳ ନ କଲେ ଆଲୋକରଶ୍ମିର ସମ୍ୟକ୍ ସଞ୍ଚାରରେ ଯେପରି ବାଧା ପଡ଼େ, ମନ ସମ୍ବନ୍ଧରେ ଠିକ୍ ସେହିପରି । ମନକୁ ଶୁଦ୍ଧ ବା ନିର୍ମଳ କରିବାକୁ ହେଲେ ଯଥାର୍ଥ ତପସ୍ୟା ଆବଶ୍ୟକ । ଅହିଂସା, ସତ୍ୟ, ଶୌଚ, ଦୟା, ଦାନ ପ୍ରଭୃତି ଏହାର ଉପକରଣ । ମଧୁସୂଦନ ଜୀବନବ୍ୟାପୀ ଉକ୍ତରୂପ ଯଥାର୍ଥ ତପସ୍ୟା ଦ୍ୱାରା ମନକୁ ନିର୍ମଳ କରି ସେହି ମହାସ୍ଥାନ୍ ବସ୍ତୁ ଦର୍ଶନର ଅଧିକାରୀ ହୋଇଥିଲେ । ଯେ ଏହି ଆବରଣ ପରିଷ୍କାର କରି ନ ପାରେ, ସେ ଏକ ସଙ୍କୀର୍ଣ୍ଣ ଶକ୍ତି ମଧ୍ୟରେ ଆବଦ୍ଧ ଥାଇ ବିରାଟ ଭାବ ଦର୍ଶନରୁ ବଞ୍ଚିତ ହୁଏ । କିନ୍ତୁ ସାନରୁ ବଡ଼କୁ ଲାଭ କରିବା ସମସ୍ତଙ୍କ ପକ୍ଷରେ ସ୍ୱାଭାବିକ । ସମସ୍ତେ ପ୍ରଥମ ଅବସ୍ଥାରେ ସାନକୁ ବଡ଼ ମଣିଥାନ୍ତି । କିନ୍ତୁ ମଣିଷ ଜ୍ଞାନପଥରେ ଯେତିକି ଅଗ୍ରସର ହେଉଥାଏ, ବଡ଼ ଧାରଣଯୋଗ୍ୟ ତାହାର ମନ ସେତିକି ସାନକୁ ଛାଡ଼ି ବଡ଼ ଆଡ଼କୁ ଧାଉଁଥାଏ । ଧର୍ମସ୍ୱାମାନଙ୍କ ଜୀବନ ଆଲୋଚନା କରି ଦେଖ, ସେମାନେ ସାକାର ଉପାସନା ବାଟେ ଧ୍ୟାନଗମ୍ୟ ନିରାକାରଙ୍କ ଉପାସନା ଲଭି କରିଅଛନ୍ତି । ଏହା ସ୍ୱଭାବସିଦ୍ଧ ଯେ ଲୋକ ପ୍ରଥମେ ଚକ୍ଷୁଃ କର୍ଣ୍ଣାଦି ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁକୁ ଦର୍ଶନାଦିଦ୍ୱାରା ଧାରଣ କରେ । ମନର ଏ ଗ୍ରାହିକା ଶକ୍ତି କହୁଗୁଣରେ ଥିଲେହେଁ ଇନ୍ଦ୍ରିୟାଗମ୍ୟ ବସ୍ତୁମାନଙ୍କୁ

ଧ୍ୟାନଦ୍ୱାରା ଧାରଣ କରିବା ସାଧାରଣ ଜନ ପକ୍ଷରେ ସମ୍ଭବ ନୁହେଁ । ସୁତରାଂ ପ୍ରାକୃତ ଲୋକ ସେହି ଇନ୍ଦ୍ରିୟାଗମ୍ୟ ବସ୍ତୁକୁ ବଡ଼ କରି ମାନିଥାଏ । ଆଉ ଦୃଷ୍ଟାନ୍ତର ପ୍ରୟୋଜନ ନାହିଁ, ପ୍ରାୟ ସମସ୍ତେ ଏହା ପ୍ରତ୍ୟକ୍ଷ କରୁଥିବେ, ଯେଉଁ ଲୋକ କେବେ ଜନ୍ମଭୂମି ଛାଡ଼ି ବିଦେଶକୁ ବାହାରି ନାହିଁ କିମ୍ବା ବିଦେଶର କୌଣସି ସମ୍ବାଦ ଜାଣେ ନାହିଁ, ସେ ନିଜ ଅଞ୍ଚଳର ନଦୀ, ମନ୍ଦିର ବା ପର୍ବତକୁ ସବୁଠାରୁ ବଡ଼ ବୋଲି ଦୃଢ଼ ଜାଣିଥାଏ । ଅନ୍ୟଲୋକ ତାହାଠାରୁ ବହୁତ ବଡ଼ ଥିବାର ଯେତେ କହିଲେ ସୁଦ୍ଧା ତାହାର ଆତ୍ମପ୍ରତ୍ୟୟ ଜନ୍ମେ ନାହିଁ । କିନ୍ତୁ ଯେତେ-ବେଳେ ସେ କେବେ ବିଦେଶକୁ ଯାଇ ବଡ଼ ବଡ଼ ନଦୀ-ପର୍ବତମାନ ଦେଖେ, ତେତେବେଳେ ତାହାର ସେ ଧାରଣା ଚାଲିଯାଏ ଏବଂ ଅନ୍ୟ କଥାରେ ବିଶ୍ୱାସ ଜନ୍ମେ, ଆଉ ମଧ୍ୟ ସଙ୍ଗେ ସଙ୍ଗେ ସେ ଶିଖେ, "ମୁଁ ଯାହା ଦେଖିଲି, ତାହାଠାରୁ ମଧ୍ୟ ବଡ଼ ବଡ଼ ଏ ପୃଥିବୀ ମଧ୍ୟରେ ଥାଇପାରେ ।" ଏପରି ଘଟନା ଦୈନନ୍ଦିନ ମନୁଷ୍ୟ ଜୀବନରେ କେତେ ଘଟୁଅଛି, କିନ୍ତୁ ସମସ୍ତଙ୍କ ଜୀବନରେ ଉନ୍ନତି ହେଉ ନାହିଁ । ଉନ୍ନତିର ଉପକରଣ ମଧ୍ୟ ସମସ୍ତେ ଲାଭ କରି ପାରନ୍ତି ନାହିଁ । ଭଗବାନଙ୍କ କୃପାରୁ ଯେ ଯେପରି ଉପାଦାନ (ସତ୍ସଙ୍ଗ ସାହାଯ୍ୟାଦି) ଲାଭ କରେ, ତାହାର ସେହିପରି ପୁଷ୍ଟି ହୋଇଥାଏ । ଆମ୍ଭମାନଙ୍କ ମଧୁସୂଦନ ଅଙ୍କୁର ଅବସ୍ଥାରେ କିପରି ଉପାଦାନ ଲାଭ କରିଥିଲେ ଦେଖାଯାଉ ।

ଉକ୍ତ ସମୟରେ ସିଂହଦ୍ୱାର ସନ୍ନିହିତ ବାବାଜୀ ମଠରେ 'ହରିଦାସ ବାବାଜୀ' ନାମକ ଜଣେ ଧର୍ମାତ୍ମା ସାଧୁପୁରୁଷ ଥିଲେ । ମଧୁସୂଦନ ମନ୍ଦିରକୁ ଗଲେ ଏହି ମଠକୁ ପ୍ରାୟ ଯାନ୍ତି । ବାବାଜୀ ଗୋଟିଏ ବାଳକର ଏପରି ସାଧୁସମ୍ପଦର ଓ ଧର୍ମଭାବ ଦେଖି ପରମ ଆନନ୍ଦିତ ହୋଇଥିଲେ । ତେଣୁ ଦେଖିଲାକ୍ଷଣି ତାହାଙ୍କୁ ପାଖରେ ବସାଇ ମସ୍ତକରେ ହାତ ବୁଲାଇ ଆଶୀର୍ବାଦ କରୁଥିଲେ ଏବଂ ମଝେ ମଝେ ସ୍ନେହାତିଶଯ୍ୟବଶତଃ ତାଙ୍କଠାରୁ କଣ୍ଠସ୍ଥ ଗୀତଶ୍ଳୋକମାନ ଆଦାୟ କରି ଆପ୍ୟାୟିତ ହେଉଥିଲେ । ଆହୁରି ମଧ୍ୟ ସୁନ୍ଦର ବ୍ୟାଖ୍ୟାନ ଦ୍ୱାରା ସେହି ଶ୍ଳୋକା-ବଳୀର ଭାବ ତାହାଙ୍କ ମନରେ ସୁସ୍ପଷ୍ଟ ଅଙ୍କିତ କରି ଦେଉଥିଲେ । ଧର୍ମପ୍ରାଣ ମଧୁସୂଦନ ବାବାଜୀଙ୍କ ବ୍ୟାଖ୍ୟା ଶ୍ରବଣରେ ଧନ୍ୟଂମନ୍ୟ ହୋଇ ଅନ୍ୟାନ୍ୟ ନୂତନ ନୂତନ ଶ୍ଳୋକମାନ ଯେପରି ଉପସ୍ଥିତ ହେଉଥିଲେ । ବାବାଜୀ ମଧ୍ୟ ଏହି ପ୍ରପନ୍ନ ବାଳକଙ୍କୁ ଯୋଗ୍ୟପାତ୍ର ଜାଣି ସମସ୍ତ ସମୟରେ ଧର୍ମୋପଦେଶ ଦେବାର ସୁବିଧା ପାଇଥିଲେ । ଏହି ସଜ୍ଜନ ସଙ୍ଗ ପ୍ରଥମେ ମଧୁସୂଦନଙ୍କ ଜୀବନର ମାର୍ଗକୁ ଉଜ୍ଜ୍ୱଳ କରିଦେଲା ଅଥବା ମଳିନ ଆବରଣକୁ କିଞ୍ଚିତ ପରିଷ୍କାର କରିଦେଲା । ମହାତ୍ମା ଶଙ୍କର କହିଛନ୍ତି, "କ୍ଷଣମିହ ସଜ୍ଜନ ସଙ୍ଗତିରେକା ଭବତି ଭବାର୍ଣ୍ଣବତରଣେ ନୌକା ।" ଏ ସଂସାରରେ ଯେ ସଜ୍ଜନସଙ୍ଗତି ଲାଭ କରେ, ସେହି ସୌଭାଗ୍ୟବାନ୍ ।

ହି ଶାସ୍ତ୍ରରେ ମଧୁସୂଦନ ଆଉ ଏକ ହରିଦାସଙ୍କୁ ଜ୍ଞାନଦାତା* ରୂପେ ଲାଭ କଲେ । ଏହାଙ୍କର ପରିଚୟ ପୂର୍ବପ୍ରସଙ୍ଗରୁ ପାଠକମାନେ ପାଇଅଛନ୍ତି । ଦାର୍ଶନିକ ପଣ୍ଡିତମାନେ ପ୍ରାୟ ଏକେଶ୍ୱରବାଦୀ ହୋଇଥା'ନ୍ତି । ବରଂ ଅନେକ ସମୟରେ ଶୁଷ୍କ ତର୍କସ୍ତୂପରେ ପଡ଼ି ସେମାନେ ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତି । ତେଣୁ ଜ୍ଞାନଗର୍ବି ସମାଜରେ ନାସ୍ତିକତାର ବିଳାସ ଦେଖାଯାଏ । ଭକ୍ତମାନେ କହନ୍ତି, "ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର ।" ଆମ୍ଭମାନଙ୍କ ଏହି କବି ମଧ୍ୟ ସେହି ତାର୍କିକ ପଣ୍ଡିତଙ୍କୁ ଲକ୍ଷ୍ୟ କରି ଠାଏ କହିଅଛନ୍ତି—

"ହେ ପଣ୍ଡିତ ! କ୍ଷୁଦ୍ର ତବ ବୁଦ୍ଧି-ମାନଦଣ୍ଡେ,
ବିଶ୍ୱରୂପ, ମାପିବ ହେ ଅନନ୍ତ ଅପାରେ,
ତୀକ୍ଷ୍ଣ ତର୍କ କ୍ଷୁର-ଧାରେ ଖଣ୍ଡିଣ ଅଖଣ୍ଡେ
ମାତିବ ହେ କଲ୍ଲୋଲ୍ଲାସେ ବୌଦ୍ଧ ଅହଂକାରେ,
ଦୂରେ ଫିଙ୍ଗି ଅଭିମାନ ପ୍ରମାଣ ପ୍ରମାଦ
ପଡ଼ ଆସି ସେ ଅନନ୍ତ-ପାଦ-ପଦ୍ମତଳେ,
ହେ ଚତୁର ସୁଧୀ ! ଛାଡ଼ି ବିସ୍ତର-ବିଭୂଷା
ଭୁଞ୍ଜ ମହାନନ୍ଦେ ମହା ବିଶ୍ୱାସମାଧୁରୀ ।"

ମହାତ୍ମା ହରିହର ଦାସ ଏହି ଶ୍ରେଣୀର ପଣ୍ଡିତ ଥିଲେ । ସେ ହିନ୍ଦୁନାମଧାରୀ ଥିଲେ ସତ୍ୟ, କିନ୍ତୁ ଆହାର ଓ ଆଚାରରେ ତାଙ୍କର ହିନ୍ଦୁ ପରି କୌଣସି ପ୍ରକାର ବିଚାର ବା ବିକାର ନ ଥିଲା । ସେ ହିନ୍ଦୁ ମଧ୍ୟରେ ହିନ୍ଦୁ, ସାହେବ ଗୋଷ୍ଠୀରେ ସାହେବ ଏବଂ ବୌଦ୍ଧଗଣନାରେ ବୌଦ୍ଧ ଥିଲେ । ଦେଶ ବିଦେଶରେ ତାହାଙ୍କର ଯେପରି ସୁଖ୍ୟାତି ଥିଲା, ସାହେବ ମହଲରେ ମଧ୍ୟ ସେହିପରି ସମାଦର ଥିଲା । ତାଙ୍କରି ପ୍ରବର୍ତ୍ତନାରେ ତଦାନୀନ୍ତନ ମାଜିଷ୍ଟ୍ରେଟ ମହାମତି ବିକ୍ସଢ଼ିଏଲ ସାହେବ ସଂସ୍କୃତାନୁରାଗୀ ହୋଇ ସେ ଭାଷାକୁ ଉତ୍ତମ ରୂପେ ଆୟତ୍ତ କରିଥିଲେ । ଏହି ମହାତ୍ମା ବହୁ ଚେଷ୍ଟାରେ ବଲରାମପୁରର ବଦାନ୍ୟ ମହାରାଜଙ୍କୁ ପ୍ରବର୍ତ୍ତାଇ ପୁରୀର ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠିତ କରାଇଥିଲେ । ଏହାକୁ ଆହୁରି ପ୍ରଶସ୍ତତର ଭିତ୍ତିରେ ସ୍ଥାପନ କରିବାକୁ ତାହାଙ୍କର ଅଭିଳାଷ ଥିଲା, କିନ୍ତୁ କାଳ ସହିଲା ନାହିଁ । ଯେଉଁମାନେ ଅନର୍ଗଳ ସଂସ୍କୃତ ଭାଷାରେ ଏହାଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ଧନ୍ୟ ହୋଇଅଛନ୍ତି, ସେମାନେ ନିଶ୍ଚୟ ଜୀବନରେ ଏକ ମହାବୈଦ୍ୟୁତିକଶକ୍ତି ପ୍ରବାହ

* ଶ୍ମଶାନ କବିତାରେ—"ମୃତ ଜ୍ଞାନଦାତା ପୁଣି ମୃତ ପରିଜନ,
ନୟନ ଅଗ୍ରତେ ଯେତେ ନାଚିଲେ ତକ୍ଷଣ"
ଏହାଙ୍କୁ ଲକ୍ଷ୍ୟ ଅଛି ।

ଅନୁଭବ କରିଅଛନ୍ତି । ତାହାଙ୍କ ଜୀବନର ପ୍ରଭାବ ସ୍ୱର୍ଗତ ରାଧାନାଥ ଓ ମଧୁସୂଦନ ତଥା ଅନ୍ୟାନ୍ୟ କତିପୟ ଶିଷ୍ୟଙ୍କ ଜୀବନରେ ଅଳ୍ପାଧିକ ପରିମାଣରେ ପ୍ରତିଫଳିତ ହୋଇଅଛି । ଏହାଙ୍କ ନିକଟରେ ବାଳକ ମଧୁସୂଦନ ଈଶ୍ୱରସତ୍ତା ବିଷୟରେ ପ୍ରମାଣଶୂନ୍ୟରୁ ନାନା ମତବାଦ ଶ୍ରବଣ ସହ ତର୍କ କରୁଥିଲେ । 'ସାନ ମୁହଁରେ ବଡ଼ କଥା' ଦେଖି ବହୁଦ୍ୱାପନ୍ନ ଦାସେ ତାହାଙ୍କୁ ଅତ୍ୟଧିକ ସ୍ନେହ କରୁଥିଲେ* ଏବଂ ସ୍ୱୀୟ ଜୀବନର ପ୍ରଶ୍ନ ବିସ୍ତାର କରିବା ଲାଗି ସୁଯୋଗ ଲାଭ କରିଥିଲେ । ମଧୁସୂଦନ ମଧ୍ୟ ସେହି ଜ୍ଞାନୋପଦେଷ୍ଟାଙ୍କ ପ୍ରତି ଅତୀବ ଭକ୍ତିପ୍ରବଣ ଥିଲେ, କିନ୍ତୁ ଗୁରୁଙ୍କର ନାସ୍ତିକ୍ୟଭାବ ତାହାଙ୍କ ମନରେ ଲଜ୍ଜିତ ଅଶ୍ରଦ୍ଧା ଜନ୍ମାଇଥିଲା । ଜ୍ଞାନ ଜଗତରେ ସେ ହରିହରଙ୍କର ଯଥାର୍ଥ ଶିଷ୍ୟ ଥିଲେ ସତ୍ୟ, ମାତ୍ର ଭକ୍ତ ହିସାବରେ ସେ ତାଙ୍କର ଗୁରୁସ୍ଥାନୀୟ ଥିଲେ । ହରିହରଙ୍କ ଅକାଳ ମୃତ୍ୟୁ ପୂର୍ବେ ସେ ଯେଉଁ ଅପୂର୍ବ ସ୍ୱପ୍ନ ଦେଖିଥିଲେ, ସେଥିରୁ ତାହାଙ୍କ ହୃଦୟର ମହତ୍ତ୍ୱ ଏବଂ ଈଶ୍ୱରାନୁଗ୍ରହ୍ୟତାର ପରିଚୟ ମିଳେ । ଏପରି ସଫଳ ସ୍ୱପ୍ନ ମହାତ୍ମା ଭିନ୍ନ କାହାର ପକ୍ଷରେ ସମ୍ଭାବ୍ୟ ନୁହେଁ । ମଧୁସୂଦନ ସ୍ୱପ୍ନରେ ଦେଖିଲେ, "ପଣ୍ଡିତ ହରିହର ଦାସ ଏକ ଜ୍ୱଳନ୍ତା ଦାରୁ ସ୍କନ୍ଧରେ ବଡ଼ଦାଣ୍ଡରେ ବ୍ୟାକୁଳ ହୋଇ ଦୌଡ଼ୁଛନ୍ତି ଏବଂ ଯାହାକୁ ଦେଖୁଛନ୍ତି ତାହା ଉପରକୁ ନିଆଁ ଖୁଣ୍ଟାକୁ ଫୋପାଡ଼ୁଛନ୍ତି—ଯେତେ ଫୋପାଡ଼ିଲେ ସୁଦ୍ଧା ତାହା କାନ୍ଧକୁ ଛାଡ଼ୁନାହିଁ—ପାଖର ଲୋକମାନେ ପୋଡ଼ି ମରୁଛନ୍ତି— ଏହିପରି ସେ ଦୌଡ଼ି ଦୌଡ଼ି ଶେଷରେ ପ୍ରାନ୍ତବର୍ତ୍ତୀ ନରେନ୍ଦ୍ର ପୁଷ୍କରିଣୀରେ ଯାଇ ନିମଗ୍ନ ହୋଇ ଶାନ୍ତିଲାଭ କଲେ ।" ଏହି ସ୍ୱପ୍ନର ଅଳ୍ପଦିନ ପରେ ପଣ୍ଡିତ ମହାଶୟ ସେହିପରି ଦଗ୍ଧ ହୋଇ ଅକାଳରେ ପ୍ରାଣତ୍ୟାଗ କଲେ । ବର୍ଣ୍ଣାର୍ଥୀ ମଧୁସୂଦନଙ୍କ ପ୍ରାଣରେ ନାସ୍ତିକର ଏହି ବିଷମ ପରିଣାମର ଚିତ୍ରଟି କୈଶୋର ଅବସ୍ଥାରୁ ଅତି ନିପୁଣ ଭାବରେ ଅଙ୍କିତ ହୋଇଗଲା । ଯଥାର୍ଥରେ ନାସ୍ତିକ ଯେଉଁ ବାଟେ ଯାଏ, ପାଖର ଲୋକଙ୍କୁ ତାହାର ନାସ୍ତିକ୍ୟ ବିଷରେ ଜର୍ଜରିତ କରିପକାଏ । ପରିଶେଷରେ ସେ ପୁଣି ମୃତ୍ୟୁଦ୍ୱାରା ଭଗବାନଙ୍କର 'କ୍ଷମାସିନ୍ଧୁ ନୀରେ' ନୀରବରେ ମଗ୍ନ ହୋଇ ଚରଶାନ୍ତି ଭୋଗ କରେ । ମହାତ୍ମା ହରିହର ନାସ୍ତିକ ଥିଅନ୍ତୁ ବା ଯାହା ଥିଅନ୍ତୁ, ତାହାଙ୍କ ଉପଦିଷ୍ଟ ଜ୍ଞାନାଞ୍ଜନ ଯୋଗେ ମଧୁସୂଦନଙ୍କ ଚକ୍ଷୁ ମାର୍ଜିତ ହୋଇଥିଲା, ତମୋମୟ ପ୍ରକୋଷ୍ଠରେ କ୍ଷୀଣ ଦୀପାଲୋକ ଦେଖା ଦେଇଥିଲା । କିନ୍ତୁ ତୃତୀୟରେ ସେ ଯେଉଁ ହରିଙ୍କି ଲାଭ କଲେ, ସେଥିରେ ତାହାଙ୍କ ଜୀବନର ମାର୍ଗ ଉଜ୍ଜ୍ୱଳ ରୂପେ ପ୍ରତିଭାତ ହୋଇଗଲା—ହୃଦୟର ଗ୍ରନ୍ଥି

---

* କଟକରେ ଅବସ୍ଥାନ କାଳରେ ଅନେକ ସମୟରେ ସେ ମଧୁସୂଦନଙ୍କୁ ଦେଖିବାଲାଗି କଟକ ଆସୁଥିଲେ ।

କେତୋଟି କଥା ଅକଞ୍ଚନ ହୃଦୟର ଭକ୍ତି ପୁଷ୍ପାଞ୍ଜଳିସ୍ୱରୂପ ସର୍ବସାଧାରଣଙ୍କ ନିକଟରେ ବ୍ୟକ୍ତ କରିବାକୁ ଇଚ୍ଛୁକ ହୋଇଅଛି ।

× × × ଜ୍ୟେଷ୍ଠ ତାତ ଜନନୀ ହୃଦୟର ଉଚ୍ଛ୍ୱସିତ ନିଃସ୍ୱାର୍ଥ ସ୍ନେହ ସମ୍ୟକ୍ ରୂପେ ହୃଦୟଙ୍ଗମ କରିବାପାଇଁ ଅବକାଶ ପାଇ ନ ଥିଲେ, ତଥାପି ତାଙ୍କର ଅଗାଧ ମାତୃଭକ୍ତି ତାଙ୍କର ଅମୂଲ୍ୟ ମହତ୍ତ୍ୱ ଜୀବନର ପରିଚୟସୂଚକ ଅଟେ । ଶୈଶବରୁ ମାତୃହୀନ ହୋଇଲେହେଁ ତାଙ୍କ ହୃଦୟରେ ମାତୃଭକ୍ତି ସର୍ବଦା ବିଶେଷଭାବରେ ଜାଗ୍ରତ ଥିଲା, ଏତାବତ୍‌କାଳ ପର୍ଯ୍ୟନ୍ତ ମାତାଙ୍କ ସାମ୍ବତ୍ସରିକ ଶ୍ରାଦ୍ଧ ଉପାସନାରେ ମାତାଙ୍କ ପ୍ରତି ହୃଦୟର ଗଭୀର ଭକ୍ତିବିମଣ୍ଡିତ ଶୋକୋଚ୍ଛ୍ୱାସପୂର୍ଣ୍ଣ ଆକୁଳଭାବ ଓ ଅଶ୍ରୁଜଳ ଦେଖିଲେ ମନରେ ହେଉଥିଲା, ଯେପରି ଅଳ୍ପ ଦିବସ ହେଲା ମାତୃ-ବିୟୋଗ ଘଟିଅଛି । ତାଙ୍କର ମାତୃଭକ୍ତି କି ରୂପ ଅସାଧାରଣ ଏବଂ ସ୍ୱର୍ଗୀୟ ଉଚ୍ଚ-ଭାବାପନ୍ନ ଥିଲା, ତାହା ବ୍ୟକ୍ତ କରିବା ମୋ ପକ୍ଷରେ ଅସମ୍ଭବ । × × ×

ମାତୃ ବିୟୋଗ ପରେ ପିତାମହ ଜ୍ୟେଷ୍ଠ ତାତ ଓ ପିତାଙ୍କୁ ସର୍ବଜ୍ୟେଷ୍ଠ ମାତୁଳାଳୟରେ ରଖିଥିଲେ, କାରଣ ପିତାମହ ପୁଲିସ କର୍ମଚାରୀ ଥିଲେ, ତାଙ୍କ ପକ୍ଷରେ ସନ୍ତାନମାନଙ୍କର ତତ୍ତ୍ୱାବଧାନ କରିବା ସମ୍ଭବପର ନ ଥିଲା । ଜ୍ୟେଷ୍ଠ ତାତ ମାତୁଳାଳୟରେ ଥାଇ କନିଷ୍ଠ ସହୋଦରଙ୍କ ପ୍ରତି ସର୍ବଦା ସ୍ନେହଦୃଷ୍ଟି ରଖିଥିଲେ । ସେହି ପାଞ୍ଚ ବର୍ଷର ଶିଶୁ ଯଦ୍ଧିରେ କନିଷ୍ଠର କୌଣସି ପ୍ରକାର ଦୁଃଖ କଷ୍ଟ ନ ହୁଏ ସେ ବିଷୟରେ ସର୍ବଦା ଯତ୍ନଶୀଳ ଥିଲେ । ବାସ୍ତବରେ ଜ୍ୟେଷ୍ଠ ତାତ ଶୈଶବରୁ ଏତାବତ୍‌କାଳ ପର୍ଯ୍ୟନ୍ତ କନିଷ୍ଠ ସହୋଦର ଓ ଭ୍ରାତାମାନଙ୍କୁ ପୁତ୍ରବତ୍ ସ୍ନେହ ଯତ୍ନରେ ଲାଳନ ପାଳନ କରି "ଜ୍ୟେଷ୍ଠଭ୍ରାତା ପିତୃସମ" ଏହି କଥାର ସାର୍ଥକତା ଜୀବନରେ ଦେଖାଇ ଯାଇଅଛନ୍ତି । ତାହା ଏ ସ୍ଥଳରେ ସମ୍ପୂର୍ଣ୍ଣ ରୂପେ ବ୍ୟକ୍ତ କରିବା ଅସମ୍ଭବ, ତେବେ ସେ ସ୍ନେହ, ସେ ଯତ୍ନ, ସେ ଆଦର ଅସାଧାରଣ ଏବଂ ଅଲୌକିକଭାବାପନ୍ନ କହିଲେ ଅତ୍ୟୁକ୍ତି ହେବନାହିଁ ।

ଜ୍ୟେଷ୍ଠ ତାତ ପାଞ୍ଚ ବର୍ଷ ବୟସରେ ଗୋପ ପାଠଶାଳୀରେ ଅଳ୍ପଦିନ ଶିକ୍ଷା ଲାଭ କରିଥିଲେ । ତତ୍ପରେ ପିତାମହଙ୍କର ଭୁବନେଶ୍ୱର ବଦଳି ହେବାରୁ ଭୁବନେଶ୍ୱର ସ୍କୁଲରେ ଶିକ୍ଷାଲାଭ କଲେ । ଶୈଶବରୁ ଜ୍ଞାନଲାଭ ସଙ୍ଗେ ସଙ୍ଗେ ପବିତ୍ରତାକୁ ଜୀବନର ଅମୂଲ୍ୟ ସମ୍ପଦ ସ୍ୱରୂପ ଜାଣି ତାହାର ଆଶ୍ରୟ ଗ୍ରହଣ କରି-ଥିଲେ । ଭୁବନେଶ୍ୱରରେ ପଢ଼ୁଥିବା ସମୟରେ ଉଡ୍ରୋ ସାହେବ ସ୍କୁଲ ଇନ୍‌ସପେକ୍ଟର ଭୁବନେଶ୍ୱର ସ୍କୁଲ ପରିଦର୍ଶନ କରିବାକୁ ଯାଇ ଜ୍ୟେଷ୍ଠ ତାତଙ୍କ ସୁନ୍ଦର ନିର୍ମଳ ମୁଖଶ୍ରୀ ଦେଖି ଆନନ୍ଦ ଲାଭ କଲେ, ତତ୍ପରେ ତାଙ୍କୁ କେତେଗୋଟି ପ୍ରଶ୍ନ କରିଥିଲେ । ପ୍ରଶ୍ନ କେତୋଟିର ଉତ୍ତର ଶୁଣି ତତୋଽଧିକ ଆନନ୍ଦ ଲାଭକରି

ଅତଏବ ସନ୍ତୁଷ୍ଟ ଏବଂ ସ୍ୱତଃପ୍ରବୃତ୍ତ ହୋଇ ବିନା ବେତନରେ ପୁରୀ ଜିଲ୍ଲା ସ୍କୁଲରେ ପାଞ୍ଚ ବର୍ଷ ଶିକ୍ଷା ଲାଭ କରିବାପାଇଁ ଅନୁମତି ଦେଲେ ।

ଜ୍ୟୋଷ୍ଠ ତାତ ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ଡବଲ ପ୍ରମୋଶନ ପାଇଥିଲେ । ସେହି ବାଲ୍ୟକାଳରେ ଏକାଦଶ ବର୍ଷ ବୟସରେ ଜ୍ୟୋଷ୍ଠ ତାତଙ୍କର ବିବାହ ହୋଇଥିଲା । ଏହି ସମୟରେ ଜନ୍ ବକ୍‌ସର୍ଡସ୍ୱେଲ ପୁରୀର ମାଜିଷ୍ଟ୍ରେଟ୍ ଥିଲେ । ସେ ଅତି ସତ୍ ଏବଂ ସୁପଣ୍ଡିତ ଥିଲେ । ପୁରୀ ସ୍କୁଲକୁ ପ୍ରତିବର୍ଷ ପ୍ରତ୍ୟେକ ଥରଗୋଟି ବିଷୟରେ ପାଞ୍ଚଗୋଟି ଲେଖାଏଁ ପ୍ରଶ୍ନ ଦେଉଥିଲେ ଏବଂ ପ୍ରତ୍ୟେକ ପ୍ରଶ୍ନ ନିମିତ୍ତ ପାଞ୍ଚ ଟଙ୍କା ଲେଖାଏଁ ପୁରସ୍କାର ନିର୍ଦ୍ଧାରିତ ଥିଲା । ଜ୍ୟୋଷ୍ଠ ତାତ ତିନ ବର୍ଷ ବାର୍ଷିକ ଏକଶତ ଟଙ୍କା ଲେଖାଏଁ ଏହି ପୁରସ୍କାର ଲାଭ କରିଥିଲେ ଏବଂ ରେବା ରାଜାଙ୍କ ମେଡ଼େଲ ମଧ୍ୟ ପାଇଥିଲେ । ଉକ୍ତ ମେଡ଼େଲ ପ୍ରାପ୍ତି ବିଷୟରେ ଏହି ନିୟମ ଥିଲା ଯେ ଯେଉଁ ଛାତ୍ର ଏ ମେଡ଼େଲ ପାଇବେ, ସେ ତାହା ସାତ ଦିନ ବ୍ୟବହାର କରି ଫେରାଇ ଦେବେ ଓ ଏକ ବର୍ଷ ନିମିତ୍ତ ବିନା ବେତନରେ ଅଧ୍ୟୟନ କରିପାରିବେ । କିନ୍ତୁ କୌଣସି ଛାତ୍ର କ୍ରମାନ୍ୱୟେ ତିନି ବର୍ଷ ସର୍ବୋଚ୍ଚ ସ୍ଥାନ ପାଇଲେ ମେଡ଼େଲଟି ତାଙ୍କର ହେବ । ଜ୍ୟୋଷ୍ଠ ତାତ ଏହି ମେଡେଲ ତିନି ବର୍ଷ ପାଇଥିଲେ, ମାତ୍ର ଯେଉଁଦିନ ଉକ୍ତ ମେଡ଼େଲ ତାଙ୍କୁ ଦେବାପାଇଁ ଧାର୍ଯ୍ୟ ହୋଇ-ଥିଲା, ସେହିଦିନ କୌଣସି ଛାତ୍ର ହିଂସାପରବଶ ହୋଇ ସ୍କୁଲ ଗୃହରେ ଅଗ୍ନି ଲଗାଇ ଦେବାରୁ ମେଡେଲ ସହ ସ୍କୁଲ ଗୃହ ଭସ୍ମସାତ୍ ହୋଇଗଲା । ଜ୍ୟୋଷ୍ଠ ତାତ ଏକ ବର୍ଷ ମହାମାରୀ ଦୁର୍ଭିକ୍ଷ, ଅନ୍ୟ ଏକ ବର୍ଷ ସାଂଘାତିକ ପୀଡ଼ା ଯୋଗୁଁ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇ ନ ପାରି ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇଥିଲେ ।

୧୦ ବର୍ଷ ବୟସରୁ ଜ୍ୟୋଷ୍ଠ ତାତ ପ୍ରତିଦିନ ପ୍ରାତଃକାଳରେ ସ୍ନାନ କରି ବାନାବର ମହାଦେବ ଦର୍ଶନ ନ କରି ଅନ୍ନ ଗ୍ରହଣ କରୁ ନ ଥିଲେ ଏବଂ ପ୍ରତି ମଙ୍ଗଳବାର ଦିନ ପୁରୀ ସହର ଠାରୁ ଏକ କୋଶ ଦୂରବର୍ତ୍ତୀ ସ୍ଥାନରେ ଅବସ୍ଥିତ ସିଦ୍ଧ ମହାବୀରଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବାର ଅବ୍ୟବହିତ ପୂର୍ବେ ଜ୍ୟୋଷ୍ଠ ତାତ ଗୋଟିଏ ସ୍ୱପ୍ନ ଦେଖିଥିଲେ; ତାହା ଏହି— ଅନ୍ଧକାର ରାତ୍ରି; ସହସା ଜଟାଧାରୀ ଗୋଟିଏ ବିରାଟ ମୂର୍ତ୍ତି ତାଙ୍କ ସମ୍ମୁଖରେ ଉଭା ହୋଇ ସଙ୍ଗରେ ଯିବାକୁ ତାଙ୍କୁ ସଙ୍କେତ କଲେ, ଜ୍ୟୋଷ୍ଠ ତାତ ତାଙ୍କ ପଛେ ପଛେ ଯାଉଁ ଯାଉଁ ଦେଖିଲେ, ସେହି ବିରାଟ ମୂର୍ତ୍ତି "ଓଁ" ଏହି ଶବ୍ଦ ଉଚ୍ଚାରଣ କରୁଅଛନ୍ତି ଏବଂ ତହିଁ ସଙ୍ଗେ ସଙ୍ଗେ ଚତୁର୍ଦ୍ଦିଗ ଆଲୋକିତ ହୋଇ ଯାଉଅଛୁ । ଏହି ସମୟରୁ "ଯୋ ବୈ ଭୂମା ତତ୍ ସୁଖଂ ନାଲ୍ପେ ସୁଖମସ୍ତି" ଏହି ମହାବାକ୍ୟର ଭାବ ତାଙ୍କ ହୃଦୟରେ ଜାଗତ ହୋଇଥିଲା ।

ଏହାର ଅବ୍ୟବହିତ ପରେ ସେ ଏଣ୍ଟ୍ରାନ୍‌ସ ପାସ୍ କରି କଟକ କଲେଜକୁ ଅଧ୍ୟୟନ ନିମିତ୍ତ ଆଗମନ କଲେ । ତତ୍‌କାଳୀନ ପ୍ରଫେସର ହରନାଥ ଭଟ୍ଟାଚାର୍ଯ୍ୟ ମହାଶୟ ବ୍ରାହ୍ମଧର୍ମାବଲମ୍ବୀ ଥିଲେ । ଏହାଙ୍କ ଧର୍ମ ଜୀବନରୁ ବ୍ରାହ୍ମଧର୍ମର ସାରବତ୍ତା ଉପଲବ୍ଧି କରି ଜ୍ୟେଷ୍ଠ ତାତ ଏହି ସମୟରୁ ବ୍ରାହ୍ମଧର୍ମ ପ୍ରତି ଅନୁରାଗୀ ହେଲେ ଏବଂ ତାଙ୍କର ସହାଧ୍ୟାୟୀ ପ୍ୟାରୀମୋହନ ଆଚାର୍ଯ୍ୟ, ଚତୁର୍ଭୁଜ ପଟ୍ଟନାୟକ, ଭଗବତୀ ଚରଣ ଚଟ୍ଟୋପାଧ୍ୟାୟ, ବଳରାମ ଦାସ ପ୍ରଭୃତିଙ୍କ ସେନ ହରନାଥ ଭଟ୍ଟାଚାର୍ଯ୍ୟଙ୍କ ସାପ୍ତାହିକ ଉପାସନାରେ ଯୋଗଦାନ କରୁଥିଲେ । ଯେଉଁ ଧର୍ମ-ପିପାସା ଓ ଜ୍ଞାନ ପିପାସା ଶୈଶବରୁ ତାହାଙ୍କ ହୃଦୟକୁ ସ୍ପର୍ଶ କରିଥିଲା, ଧୀରେ ଧୀରେ ତାହା ତାହାଙ୍କ ମହତ୍ ଜୀବନକୁ ଦିନକୁ ଦିନ ସତ୍ୟ ଜ୍ଞାନ ଏବଂ ପୁଣ୍ୟର ଜ୍ୟୋତିରେ ଭୂଷିତ କରିଥିଲା ।

୧୮ ବର୍ଷ ବୟସରେ ଏଫ୍. ଏ. ପାସ୍ କରି ବୃତ୍ତି ଲାଭକରି କଲିକତାକୁ ଯାଇ ବି. ଏ. ପଢ଼ିବାକୁ ମନସ୍ଥ କରିଥିଲେ, ମାତ୍ର ପିତାମହ ଏକାନ୍ତ ଅସମ୍ମତ ହେବାରୁ ଅସ୍ଥାୟୀ ଭାବରେ ପୁରୀ ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦ ଗ୍ରହଣ କଲେ । ପୁଙ୍ଖାନୁପୁଙ୍ଖ ରୂପେ ଜ୍ୟେଷ୍ଠ ତାତଙ୍କ ଜୀବନର ସବିଶେଷ ଘଟନାବଳୀ ଉଲ୍ଲେଖ କରିବା ବର୍ତ୍ତମାନ ସମ୍ଭବପର ନୁହେ ଜାଣି ତହିଁରୁ କ୍ଷାନ୍ତ ହେଲି । × ×

ତାଙ୍କର ସ୍ମୃତି ଶକ୍ତି ଯେପରି ପ୍ରଖର ଥିଲା, ଶିକ୍ଷା ଲାଭର ଇଚ୍ଛା ମଧ୍ୟ ତଦ୍ରୂପ ପ୍ରବଳ ଥିଲା । ମୋହର ଶୈଶବାବସ୍ଥାରୁ ଦେଖି ଆସୁଅଛି, ଜ୍ୟେଷ୍ଠ ତାତ ତାହାଙ୍କର ଅବସର ସମୟର ଅଧିକାଂଶ ଅଧ୍ୟୟନରେ ଅତିବାହିତ କରୁଥିଲେ । ବୃଥା ଅସାର ଗଳ୍ପ କିମ୍ବା ହାସ୍ୟ କୌତୁକରେ ସମୟ ନଷ୍ଟ କରିବାର କେବେହେଁ ଦେଖିନାହିଁ । ଶିଶୁମାନଙ୍କ ସେନ ନିର୍ଦ୍ଦୋଷ ହାସ୍ୟ କୌତୁକ କରି ସେ ଆନନ୍ଦ ଅନୁଭବ କରୁଥିଲେ । ତାଙ୍କର ସେହି ହାସ୍ୟ କୌତୁକ ମଧ୍ୟରେ ଧର୍ମ ଓ ଜ୍ଞାନଶିକ୍ଷା ବଦ୍ଧମୂଳ ଥିଲା । ସନ୍ତାନମାନଙ୍କୁ ସତ୍‌ପଥରେ ରକ୍ଷା କରିବାପାଇଁ ସେମାନଙ୍କର ବିଦ୍ୟାଶିକ୍ଷା ଓ ନୀତିଶିକ୍ଷା ଆଡ଼କୁ ନିଜେ ବିଶେଷଭାବରେ ଦୃଷ୍ଟି ରଖୁଥିଲେ । ତାଙ୍କର ପରିବାର ବ୍ରହ୍ମନିଷ୍ଠ ହେବେ ଏବଂ ସେମାନେ ଦେବଦେବୀ ତୁଲ୍ୟ ପବିତ୍ର ଚରିତ, ଧର୍ମ ଜୀବନ ଏବଂ ସୁଶିକ୍ଷା ଲାଭ କରିବେ, ଏହା ତାଙ୍କର ପ୍ରାଣରେ ଐକାନ୍ତିକ କାମନା ଥିଲା ଏବଂ ତହିଁ ନିମିତ୍ତ ସେ ସାଧ୍ୟାନୁସାରେ ଆପଣାର ଶକ୍ତି ସାମର୍ଥ୍ୟ ଦାନ କରୁଥିଲେ । ପାରିବାରିକ ଉପାସନା ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା, ଏଥିପ୍ରତି ପରିବାରର କାହାରି ଅନାସ୍ଥା ଦେଖିଲେ ଅତ୍ୟନ୍ତ ବ୍ୟଥିତ ହେଉ-ଥିଲେ । ପାରିବାରିକ ବନ୍ଧନ ମୂଳରେ ଭଗବତ୍‌ପ୍ରେମ ସୁପ୍ରତିଷ୍ଠିତ ହେଲେ ସେହି ବନ୍ଧନ ସୁଦୃଢ଼ ଏବଂ ଚିରନ୍ତନ ହୁଏ, ଏହି ଦୃଢ଼ ବିଶ୍ୱାସରେ ଅନୁପ୍ରାଣିତ ହୋଇ ପ୍ରତ୍ୟହ ପାରିବାରିକ ଉପାସନା ପାଇଁ ବ୍ୟାକୁଳ ଥିଲେ ।

ବ୍ରହ୍ମନଷ୍ଠ ଗୃହସ୍ଥର ଅତଥି ସତ୍କାର ଯେ ଗୋଟିଏ ପ୍ରଧାନ ଧର୍ମ, ତାହା କହିବା ବାହୁଲ୍ୟ । ଶୈଶବରୁ ଏପର୍ଯ୍ୟନ୍ତ ଦେଖି ଆସୁଅଛୁ, କୌଣସି ଦନ ଗୃହ ଅତଥିଶୂନ୍ୟ ହୋଇନାହିଁ । ଜ୍ୟେଷ୍ଠ ତାତଙ୍କ କୋମଳ ହୃଦୟ ନରନ୍ତର କରୁଣା-ପୂର୍ଣ୍ଣ ଥିଲା, ତାଙ୍କର ଦୟା ନୀରବରେ କାର୍ଯ୍ୟ କରୁଥିଲା, ଉତ୍କଳର ବହୁ ନଗ୍ରସ୍ତ ଓ ବପନ୍ନ ଗ୍ରାହଙ୍କୁ କେତେବେଳେ ବା ନଜ ଗୃହରେ ସ୍ଥାନ ଦେଇ କେତେବେଳେ ବା ଅର୍ଥ ଦ୍ୱାରା ସାହାଯ୍ୟ କରଅଛନ୍ତ । × × ×

ମୃତ୍ୟୁଶଯ୍ୟାରେ ଶାୟିତ ହୋଇ ସୁଦ୍ଧା ସେ ଦରଦ୍ରମାନଙ୍କୁ ସର୍ବଦା ସ୍ମରଣ କରୁଥିଲେ । ଗୋଟିଏ କୁଷ୍ଠ ରୋଗୀର ନାମ ଉଲ୍ଲେଖ କର ତାହାକୁ ସାହାଯ୍ୟ କରବା ଲାଗି ଅନୁରୋଧ କରଥିଲେ ଏବଂ ଦୁଃଖୀ ଦରଦ୍ରମାନଙ୍କର ଦୁଃଖ ଦୂର କରବା ଲାଗି ସନ୍ତାନମାନଙ୍କୁ ଅନୁରୋଧ କର ଯାଇଅଛନ୍ତ । ସେ ଆପଣା ପରବାରର ଆତ୍ମୀୟସ୍ୱଜନମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଶିକ୍ଷା ଓ ଉନ୍ନତର ମୂଳ-କାରଣ ହୋଇ ସେମାନଙ୍କୁ ନାନାବଧ ଉପାୟରେ ଶିକ୍ଷାଦାନ କର ଯାଇଅଛନ୍ତ । ସ୍ଥୂଳତଃ ଜ୍ୟେଷ୍ଠ ତାତ ଏ ପରବାରର ସର୍ବବଧ ଉନ୍ନତର ମୂଳକାରଣ ଓ ଭିତ୍ତି-ସ୍ୱରୂପ ଅଟନ୍ତ ।

ମାତୃଭୂମି ଉତ୍କଳର ଶିକ୍ଷୋନ୍ନତ ବଷୟରେ ତାଙ୍କ ଜୀବନର ସର୍ବ ପ୍ରଧାନ କାର୍ଯ୍ୟ ଟାଉନ୍ ଭିକ୍ଟୋରଆ ସ୍କୁଲ । ନଜ ପରବାରର ବହୁ ଭାର ମସ୍ତକରେ ଗ୍ରହଣ କର ସୁଦ୍ଧା ଯେତେବେଳେ ଏହି ସ୍କୁଲ କାର୍ଯ୍ୟ ଆରମ୍ଭ କଲେ, ସେ ସମୟରେ ବହୁ ଦନ ପର୍ଯ୍ୟନ୍ତ ତାଙ୍କୁ ସ୍କୁଲ ପାଇଁ ବହୁ ବ୍ୟୟଭାର ବହନ କରବାକୁ ହୋଇଅଛୁ । ବର୍ତ୍ତମାନ ସ୍କୁଲର ବ୍ୟୟ ଲାଗି ମାସିକ ଅର୍ଥ ସାହାଯ୍ୟ କରବାକୁ ହେଉ ନ ଥିଲା ସତ୍ୟ, କନ୍ତୁ ସ୍କୁଲ ଗୃହ ନର୍ମାଣ ଲାଗି ଜରାଜୀର୍ଣ୍ଣ ରୋଗକ୍ଲିଷ୍ଟ ଶରୀର ଘେନ ଜ୍ୟେଷ୍ଠ ତାତ ଉତ୍କଳର ଦ୍ୱାରେ ଦ୍ୱାରେ ଯେପର ଭାବରେ ଅର୍ଥ ଭିକ୍ଷା କରୁଥିଲେ, ତ ହା ଚନ୍ତା କଲେ ଉତ୍କଳର ଉନ୍ନତ କାମନାରେ ତାଙ୍କ ହୃଦୟ କେପର ବ୍ୟାକୁଳ ହେଉଥିଲା ଏବଂ ସେଥିପାଇଁ ସେ କେତେଦୂର ଯତ୍ନ ଏବଂ ଚେଷ୍ଟା କରଅଛନ୍ତ, ତାହା ହୃଦୟଙ୍ଗମ ହେବ ।

ଜ୍ୟେଷ୍ଠ ତାତ କପର ସାହତ୍ୟାନୁରାଗୀ ଥିଲେ, ତାହା ଉଲ୍ଲେଖ କରବା ନଷ୍ପ୍ରୟୋଜନ । ଉତ୍କଳର ସହସ୍ର ସହସ୍ର ଗ୍ରାହ ପ୍ରତଦନ ତାଙ୍କ ରଚତ ପୁସ୍ତକମାନ ଅଧ୍ୟୟନ କରୁଅଛନ୍ତ ଏବଂ ତାହାଙ୍କର ଉଦାର ଧର୍ମ ପ୍ରଣୋଦତ ବହୁଳ ପ୍ରବନ୍ଧ ଏବଂ କବତାର ସରସ ମଧୁର ଭାବ ଏବଂ ଭାଷା ଉତ୍କଳର ଶିକ୍ଷିତ ମଣ୍ଡଳୀଙ୍କ ନକଟରେ ସୁପରଚତ । × × ×

ତାଙ୍କର ଭ୍ରାତାଗଣଙ୍କ ଏବଂ ବନ୍ଧୁମାନଙ୍କ ପ୍ରତି ତୀକ୍ଷ୍ଣଦୃଷ୍ଟି ଥିଲା । ପାରିବାରିକ କଥୋପକଥନରେ କୌଣସି ପ୍ରକାର ଚଳିତ ଅଶୁଦ୍ଧ ଶବ୍ଦ ବ୍ୟବହାର କରୁ ନ ଥିଲେ ଏବଂ କେହି ବ୍ୟବହାର କରିବାର ଶୁଣିଲେ ତତ୍‌କ୍ଷଣାତ୍ ତାହା ସଂଶୋଧନ କରି ଦେଉଥିଲେ । କୌଣସି ପ୍ରକାର ଅଶ୍ଳୀଳ ଶବ୍ଦର ବ୍ୟବହାର କରିବା ଦୂରେ ଥାଉ, ତାହା ଶୁଣିବାକୁ ମଧ୍ୟ ଘୃଣା ବୋଧ କରୁଥିଲେ ।

ଜ୍ୟେଷ୍ଠ ତାତଙ୍କ ହୃଦୟ ଅତୀବ ସ୍ନେହ-କୋମଳ ଥିଲା । କନ୍ୟା ଏବଂ ବଧୂମାନଙ୍କ ପ୍ରତି ତାହାଙ୍କର ସ୍ନେହ ଓ ଆଦର ମଧ୍ୟରେ କିଛି ବିଶେଷତ୍ୱ ଥିଲା । ବଧୂ ଓ କନ୍ୟାମାନଙ୍କୁ ଗୃହର ଲକ୍ଷ୍ମୀ ଏବଂ ଭୂଷଣ ସ୍ୱରୂପ ମନେ କରୁଥିଲେ ଏବଂ 'ମା' ଏହି ମଧୁର ଶବ୍ଦରେ ସମ୍ବୋଧନ କରି ସେମାନଙ୍କ ହୃଦୟକୁ ଆକୃଷ୍ଟ କରୁଥିଲେ । ପତ୍ରାଦିରେ 'ମା ମୋର' ବୋଲି ସମ୍ବୋଧନ କରି ପତ୍ରାଦି ଲେଖୁଥିଲେ ଏବଂ ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ଲାଗି ଯଥାସାଧ୍ୟ ଚେଷ୍ଟା କରୁଥିଲେ । କନ୍ୟାମାନଙ୍କ ପ୍ରତି ତାଙ୍କର ସୁକୋମଳ ବ୍ୟବହାରରୁ ଅନୁଭବ କରିଅଛୁ ଯେ ତାଙ୍କର ଇଚ୍ଛା କନ୍ୟାମାନେ ତାଙ୍କୁ ପିତାରୂପେ ଶ୍ରଦ୍ଧା ଭକ୍ତି କଲେ ହେଁ ଭୟରେ ତାଙ୍କଠାରୁ ଦୂରରେ ରହିବେ ନାହିଁ, ପିତାରୂପେ ସ୍ନେହ ଭକ୍ତି ସଙ୍ଗେ ସଙ୍ଗେ ପୁତ୍ରରୂପେ ସ୍ନେହ ଏବଂ ପ୍ରୀତି କରିବେ ।

ଏପର୍ଯ୍ୟନ୍ତ ଯେଉଁ ଜିତେନ୍ଦ୍ରିୟ, ସ୍ନେହଶୀଳ, ଧର୍ମନିଷ୍ଠ ପିତାଙ୍କ ସ୍ନେହମୟ, ପୁଣ୍ୟମୟ କୋଡରେ ଲାଳିତ ପାଳିତ ହୋଇଅଛୁଁ ଏବଂ ଯାହାଙ୍କର ସେହି ମଧୁମୟ ସ୍ନେହବାକ୍ୟ, ଅକ୍ଷୟ ଅମୂଲ୍ୟ ଆଶୀର୍ବାଦ, ପବିତ୍ର ଚୁମ୍ବନ ଲାଭ କରି ଆଜି ଏ ଜୀବନକୁ ସାର୍ଥକ ମଣୁଅଛୁଁ, ପ୍ରାଣର ଏକାନ୍ତ ଆଶା ଏବଂ ପରାତ୍ପର ପରମ ଦେବତାଙ୍କ ଚରଣରେ ଏକାନ୍ତ ଭିକ୍ଷା, ନିତ୍ୟଧାମରୁ ତାଙ୍କର ସ୍ନେହାଶୀର୍ବାଦ ଆମ୍ଭମାନଙ୍କ ଜୀବନକୁ ଭଗବତ୍ ପ୍ରେମରେ ନିତ୍ୟ ଅନୁପ୍ରାଣିତ କରି ରଖୁ ।

ଜ୍ୟେଷ୍ଠ ତାତ ୩୫ ବର୍ଷ କାଳ ଏହି କଟକ ନଗରୀରେ ଥାଇ ଉତ୍କଳ ବ୍ରାହ୍ମ-ସମାଜର ଆଚାର୍ଯ୍ୟର କାର୍ଯ୍ୟ କରିଥିଲେ । ଏତାବତ୍‌କାଳ ତାହାଙ୍କ ଧର୍ମଜୀବନ ସମ୍ପର୍କରେ ଯେଉଁମାନେ ତାଙ୍କର ନିକଟବର୍ତ୍ତୀ ହୋଇ ତାଙ୍କର ବିଶ୍ୱାସର ଜୀବନ୍ତ ନିଦର୍ଶନ ଦେଖିଅଛନ୍ତି ଏବଂ ସରସ ମଧୁର ଉପାସନା ଓ ସାରଗର୍ଭ ଉପଦେଶ ଶ୍ରବଣ କରିଅଛନ୍ତି, ସେମାନେ ତାଙ୍କର ଧର୍ମଜୀବନର ମହୋଚ୍ଚଭାବ ଉପଲବ୍ଧି କରି ଥିବେ । ଧର୍ମ ବିଶ୍ୱାସର ବିରୁଦ୍ଧ କାର୍ଯ୍ୟ କରିବାକୁ ସେ ସର୍ବଦା ସଙ୍କୁଚିତ ଏବଂ ଭୀତ ହେଉଥିଲେ । ପିତାମହ ପ୍ରାୟ ତିନି ବର୍ଷ ହେବ ପରଲୋକ ଗମନ କରିଅଛନ୍ତି, ଏତଦ୍‌ଭିନ୍ନ ଅନେକ ଅନ୍ତରଙ୍ଗ ପ୍ରିୟ ବନ୍ଧୁ ବାନ୍ଧବମାନେ ଥିଲେ, କିନ୍ତୁ କାହାର ଅନୁରୋଧ କିମ୍ବା କାହାର ମନରକ୍ଷା ପାଇଁ ସେ କୌଣସି ଦିନ ସ୍ୱୀୟ ଧର୍ମବିଶ୍ୱାସରେ

ବିରୁଦ୍ଧ କାର୍ଯ୍ୟ କରିନାହାନ୍ତି । ଯୌବନକାଳରୁ ଏପର୍ଯ୍ୟନ୍ତ ବହୁ ହିନ୍ଦୁ ବିବାହରେ ନିମନ୍ତ୍ରିତ ହୋଇ ଅଛନ୍ତି, କିନ୍ତୁ କୌଣସି ଦିନ କୌଣସି ଅପବିତ୍ର ନାଚ୍ୟାଭିନୟରେ କ୍ଷଣକାଳ ପାଇଁ ଯୋଗଦାନ କରି ନାହାନ୍ତି ଏବଂ ଏହା ପ୍ରତି ତାଙ୍କର ଆନ୍ତରିକ ଘୃଣା ଥିଲା । ଏହି ପରିବାର ମଧ୍ୟରେ ଯାହାର ଜୀବନରେ ଯାହା କିଛି ସଦ୍ଭାବ ବିକଶିତ ହୋଇଅଛି, ତାହା ପୁଣ୍ୟାତ୍ମା ଜ୍ୟେଷ୍ଠ ତାତଙ୍କ ପବିତ୍ର ଚରିତ୍ର, ଜ୍ଞାନଲବ୍ଧ ସୁଶିକ୍ଷା ଓ ଧର୍ମାନୁରାଗର ପ୍ରାଣପ୍ରଦ ଉଚ୍ଛ୍ୱାସ ଦ୍ୱାରା ପ୍ରତିଷ୍ଠିତ ହୋଇଅଛି ।

ପ୍ରାୟ ୨୫ ବର୍ଷ ହେବ ଜ୍ୟେଷ୍ଠ ତାତ ଅମ୍ଳଶୂଳ ରୋଗରେ ଯନ୍ତ୍ରଣା ଭୋଗ କରୁଥିଲେ । ଦିନକୁ ଦିନ ଏହି ରୋଗ ତାଙ୍କୁ ଜୀର୍ଣ୍ଣ ଏବଂ ଦୁର୍ବଳ କରୁଥିଲା । ଏଥି ମଧ୍ୟରେ କେତେକଥର ଏହି ରୋଗରେ ଶଯ୍ୟାଶାୟୀ ହେବାକୁ ହୋଇଥିଲା, କିନ୍ତୁ ଏତେ ଶୀଘ୍ର ସେ ସଂସାରରୁ ଅବସର ଗ୍ରହଣ କରିବେ, ଏହା ଆମ୍ଭମାନଙ୍କର ବିଶ୍ୱାସ ନ ଥିଲା ।

ଗତ ଡିସେମ୍ବର ୧୫ ତାରିଖ ରାତିରେ ହଠାତ୍ ଉଦରରେ ଭୟାନକ ଯନ୍ତ୍ରଣା ବୋଧକଲେ । ସେହି ସମୟରୁ ତାଙ୍କପାଇଁ ଆମ୍ଭମାନଙ୍କର ଆଶଙ୍କା ହୋଇଥିଲା । ୨୯ ତାରିଖ ଠାରୁ ଯେ କେହି ତାହାଙ୍କ ନିକଟକୁ ଯାଇଅଛନ୍ତି, ତାଙ୍କ ସହିତ ଏପରି ଭାବରେ କଥୋପକଥନ କରିଅଛନ୍ତି, ଯହିଁରେ ସେମାନେ ବୁଝି ପାରିଥିଲେ ଯେ ତାଙ୍କର ପରଲୋକ ଗମନର ସମୟ ନିକଟବର୍ତ୍ତୀ ହୋଇଅଛି । ଔଷଧ ଏବଂ ସେବା ଗ୍ରହଣ କରିବାକୁ ନିତାନ୍ତ ଅନିଚ୍ଛୁକ ଥିଲେ । ଦିନେ ଔଷଧ ସେବା ସମୟରେ ଜଣେ ବନ୍ଧୁଙ୍କୁ କହିଲେ, "ଦେଖନ୍ତୁ, ଆଉ କି ଧରି ରଖା ଭଲ ଦେଖାଯାଏ ?" ୧୯ ତାରିଖ ଡିସେମ୍ବର କନିଷ୍ଠ ଜାମାତାଙ୍କ ହସ୍ତରେ ୨୮ ତାରିଖ ଡିସେମ୍ବର ଏହି ଅଙ୍କ ଲେଖିଦେଲେ । ସେଠାରେ ତାଙ୍କର ମଧ୍ୟମ ପୁତ୍ର ପ୍ରଶାନ୍ତ ଉପସ୍ଥିତ ଥିଲେ । ତାଙ୍କୁ କହିଲେ ଆଉ ୯ ଦିନ । × × ×

୧୭ ତାରିଖ ପ୍ରାତଃକାଳରେ ନାଡ଼ୀର ଅବସ୍ଥା ଦେଖି ପରିବାରସ୍ଥ ସମସ୍ତେ ଶୋକାକୁଳ ହେବାରୁ କହିଲେ "ମୋର ଯିବାକୁ ବିଳମ୍ବ ଅଛି, ତୁମ୍ଭେମାନେ ଏକ୍ଷଣି କାହିଁକି କାନ୍ଦୁଛ ? ଯାଅ, ଆହାରାଦି କର ।" ୨୭ ତାରିଖ ପ୍ରାତଃକାଳ ପର୍ଯ୍ୟନ୍ତ ତାଙ୍କର କଥାବାର୍ତ୍ତା ସୁସ୍ପଷ୍ଟ ଥିଲା, ତତ୍ପରେ କ୍ରମେ ବାକ୍ୟ ଜଡ଼ିତ ହେଲେ ହେଁ ୨୮ ତାରିଖ ପ୍ରାତଃକାଳ ପରଲୋକ ଗମନର ଏକ ଘଣ୍ଟା ପୂର୍ବରୁ ମାତ୍ର ଜ୍ଞାନ ଲୋପ ହୋଇଥିଲା । ପ୍ରାତଃକାଳ ୯ ଘଟିକା ପରେ ପୁଣ୍ୟାତ୍ମା ଜ୍ୟେଷ୍ଠ ତାତ ନୀରବରେ ପ୍ରଶାନ୍ତ ଭାବରେ ଶାନ୍ତିଧାମକୁ ପ୍ରସ୍ଥାନ କଲେ ।

ଇହ ପରଲୋକର ପରମ ଦେବତା, ଯେ ତୁମ୍ଭର ଭିତରେ ସଂସାର ଏବଂ ସ୍ୱର୍ଗ ଦର୍ଶନ କରୁଥିଲେ, ଯେ ଇହଲୋକରେ କେତେ ପ୍ରାଣରେ ପରଲୋକର ପରମତତ୍ତ୍ୱ ମୁଦ୍ରିତ କରିଦେଇ ଯାଇଅଛନ୍ତି, ଯେ ଇହଲୋକରେ ଥାଇ ତୁମ୍ଭର ଚିର ପୁଣ୍ୟମୟ, ଚିର ଶାନ୍ତିପ୍ରଦ, ଅନନ୍ତ ଅଭୟ କୋଡ଼ରେ ତୁମ୍ଭର ଯୋଗୀ ଋଷି ସାଧୁଭକ୍ତ ସନ୍ତାନଙ୍କୁ ଦର୍ଶନ କରି ସେମାନଙ୍କ ସହିତ ଏକାତ୍ମ ହେବାପାଇଁ ନିରନ୍ତର ବ୍ୟାକୁଳ ଥିଲେ, ଯେ ତୁମ୍ଭର ଚିରସୁନ୍ଦର ମୁଖଶ୍ରୀ ନିତ୍ୟ ଦର୍ଶନ କରି ମାନବ ଜନ୍ମ ସାର୍ଥକ କରିଥିଲେ ଏବଂ ସୁଖ ଦୁଃଖ, ସମ୍ପଦ ବିପଦ, ଶୋକ ଆନନ୍ଦରେ ତୁମ୍ଭର ଚିର ସୁମଙ୍ଗଳ ଛବି ଦର୍ଶନ କରୁଥିଲେ, ସେ ଆଜି ତୁମ୍ଭର ଚିରଶାନ୍ତି କୋଡ଼ରେ ତୁମ୍ଭର ପ୍ରେମାମୃତ ଭୁଞ୍ଜି ଆନନ୍ଦ ଓ ଶାନ୍ତି ସମ୍ଭୋଗ କରୁଅଛନ୍ତି । ଆଜି ଆମ୍ଭେମାନେ ତାହାଙ୍କର ଦୈହିକ ବିଚ୍ଛେଦରେ ଶୋକାକୁଳ ହୋଇଅଛୁଁ ସତ୍ୟ, କିନ୍ତୁ ଆମ୍ଭେମାନେ ଆଜି ତୁମ୍ଭର ପ୍ରେମ କୋଡ଼ରେ ଆମ୍ଭମାନଙ୍କର ସେହି ପିତାଙ୍କର ଶାନ୍ତ ସମାହିତ ସୁନ୍ଦର ମୁଖଶ୍ରୀ ଦେଖି ଏବଂ ତାଙ୍କର ଆତ୍ମା ସହିତ ଏକାତ୍ମ ହୋଇ ସେହି ଅକ୍ଷୟ ପ୍ରେମାମୃତ ଭୁଞ୍ଜିବା ପାଇଁ ତୁମ୍ଭର ପାଦପଦ୍ମତଳେ ଉପସ୍ଥିତ ହୋଇଅଛୁଁ । ଆଜି ତୁମ୍ଭର ଚିରକଲ୍ୟାଣମୟ ଶ୍ରୀହସ୍ତ ଏ ପରିବାରର ମସ୍ତକରେ ରଖି ଆଶୀର୍ବାଦ କର, ଆମ୍ଭେମାନେ ସେହି ପୁଣ୍ୟାତ୍ମାଙ୍କ ଜୀବନକୁ ନିରନ୍ତର ଜୀବନ୍ତ ଆଦର୍ଶସ୍ୱରୂପ ଦର୍ଶନ କରି ଜୀବନକୁ ତୁମ୍ଭର ସତ୍ୟପଥରେ ପୁଣ୍ୟପଥରେ ପରିଚାଳିତ କରିବାକୁ ସମର୍ଥ ହେଉଁ । ତାଙ୍କପାଇଁ ଆଜି ଆଉ ତୁମ୍ଭ ପାଦପଦ୍ମ ତଳେ ଆମ୍ଭେମାନେ କି ପ୍ରାର୍ଥନା କରିବୁଁ ? ଆକୁଳ ପ୍ରାଣରେ ତାଙ୍କ ଲାଗି ଏତିକି ଭିକ୍ଷା ମାଗୁଅଛୁଁ, ବର୍ତ୍ତମାନ ତାଙ୍କର ଆତ୍ମା ତୁମ୍ଭ ଚରଣ ତଳେ ତୁମ୍ଭର ଯେଉଁ ପ୍ରେମାମୃତ ଭୁଞ୍ଜିବା ଲାଗି ଉତ୍ସୁକ, ତୁମ୍ଭର ସେହି ଅନନ୍ତ ଅକ୍ଷୟ ମହାପ୍ରେମ ସିନ୍ଧୁନୀରରେ ତାଙ୍କୁ ନିମଜ୍ଜିତ କର ।

"ଓଁ ମଧୁବାତା ଋତାୟତେ ମଧୁକ୍ଷରନ୍ତି ସିନ୍ଧବଃ । ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ । ମଧୁନକ୍ତମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ । ମଧୁଦ୍ୟୌରସ୍ତୁ ନଃ ପିତା । ମଧୁମାନ୍ନୋବନସ୍ପତି ର୍ମଧୁମାନସ୍ତୁ ସୂର୍ଯ୍ୟଃ ।

ତୁମ୍ଭର ପ୍ରସାଦରେ ବାୟୁ ମଧୁ ବହନ କରୁଅଛି, ସମୁଦ୍ର ମଧୁ କ୍ଷରଣ କରୁଅଛି, ପୁଣି ତୁମ୍ଭର ପ୍ରସାଦରେ ଓଷଧି ବନସ୍ପତି ସମୂହ ମଧୁମୟ ହେଉ । ରାତ୍ରି ମଧୁମୟ ହେଉ, ଉଷା ମଧୁମୟ ହେଉ, ଦ୍ୟୁଲୋକ ଓ ସୂର୍ଯ୍ୟ ମଧୁମୟ ହେଉ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

---

( ଶ୍ରାଦ୍ଧ ସଭାରେ ପଠିତ )

# ପିତୃ-ସ୍ମୃତି

ସୁକାନ୍ତ ଗୁପ୍ତ
( କବିଙ୍କର ପୁତ୍ର )

ପ୍ରଭୁ ପରମେଶ୍ୱର ! ବଳ ଦିଅ, ଶକ୍ତି ଦିଅ, ମୋର ହୃଦୟର ଅନୁଭୂତିକୁ ଭାଷାଦ୍ୱାରା ବ୍ୟକ୍ତ କରିବାକୁ ଏହି ମୋର ପ୍ରାର୍ଥନା ।

ଡିସେମ୍ବର ୧୫ ତାରିଖ ଦିନ ସ୍ୱର୍ଗୀୟ ରାମାନାଥବାବୁଙ୍କ ପ୍ରତିକୃତି ଉଦ୍‌ଘାଟନ ଉତ୍ସବରେ ଘରକୁ ଫେରିଆସି ଦେଖିଲି, ପିତା ଶୂଳବେଦନାରେ ଶଯ୍ୟାଶାୟୀ । କିଛିକ୍ଷଣ ଉତ୍ତାରେ ମୋତେ ପଚାରିଲେ, "ମାଗୁଣି ମିଶ୍ରଙ୍କ ପୁଅ କଣ ପୁରୀରୁ ଫେରି ଆସିଲେଣି ?" ମୁଁ କହିଲି, "ମୁଁ ଜାଣେ ନାହିଁ ।" ବାବା କହିଲେ, "ତୁମ୍ଭେମାନେ କିଛି କରିବ ନାହିଁ, ସବୁ କ'ଣ ଏହି ମଧୁସୂଦନ ରାଉଙ୍କୁ କରିବାକୁ ହେବ ?" ଭୀଷଣ ବେଗ ଯନ୍ତ୍ରଣା ମଧ୍ୟରେ ସୁଦ୍ଧା ସେ ଗୃହର ସମସ୍ତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲେ । ବୃହତ୍ ବୃହତ୍ ବ୍ୟାପାର ମଧ୍ୟରେ ଯେପରି ତାହାଙ୍କର କର୍ତ୍ତବ୍ୟଜ୍ଞାନ ଫୁଟି ଉଠିଥିଲା, ଗୃହର କ୍ଷୁଦ୍ର କ୍ଷୁଦ୍ର କାର୍ଯ୍ୟ ମଧ୍ୟରେ ତାହାଙ୍କର କର୍ତ୍ତବ୍ୟଜ୍ଞାନ ସେହିପରି ବିକଶିତ ହୋଇଥିଲା ।

ସେଦିନ ରାତ୍ରି ୭ଟା ସମୟରେ ସାନ୍ତ୍ୱନା ଦେବୀ ମତେ ଉଠାଇ କହିଲେ "ବାବା ବାନ୍ତି କରୁଛନ୍ତି, ଦାଦାଙ୍କୁ ଡାକ ଦେ ।" ମୁଁ ଦାଦାଙ୍କୁ ଡାକି ଆଣିଲି । ବାବା ବାନ୍ତି କଲାପରେ ବିଛଣାରେ ପଡ଼ି ଛଟପଟ ହେବାକୁ ଲାଗିଲେ; କହିଲେ "ପେଟ ଭିତରୁ କ'ଣ ଗୋଟାଏ ଛିଡ଼ୁଛି ।" ଯାହାଙ୍କ ମୁଖରେ ରୋଗଯନ୍ତ୍ରଣାର ରେଖା ପ୍ରାୟ କେବେ ଫୁଟି ଉଠି ନ ଥିଲା, ଯେ ରୋଗଯନ୍ତ୍ରଣା ଯେତେ ବଢ଼ୁଥାଏ ତେତେ ସ୍ଥିରଭାବ ଧାରଣ କରୁଥିଲେ, ସେ ଛଟପଟ ହେବାର ଦେଖି ଆମ୍ଭେମାନେ ଭୀତ ହେଲୁଁ ।

ସେହି ଯନ୍ତ୍ରଣା ସମୟରେ ପିତା ମୋତେ କହିଲେ, "ତତେ ମୁଁ ଅନେକ ଗାଳି ଦେଇଛି ।" ଏହା କହି ମସ୍ତକରେ ହାତ ବୁଲାଇ ଦେଲେ । ଏ ତ ସେହି ପିତା, ଯାହାଙ୍କ ଅମ୍ଳାନ ବଦନରେ କେତେ ଆଘାତ କରିଥିଲି; ଏ ତ ସେହି ପିତା, ଯାହାଙ୍କ ଆଦେଶ ବିରୁଦ୍ଧରେ ମୋର ବିଦ୍ରୋହୀ ମନ ସଗର୍ବରେ ମସ୍ତକ

ଉଠାଇଥିଲି ! କିନ୍ତୁ ତାଙ୍କର ବ୍ୟାକୁଳ ମୁଖରୁ କରୁଣାର୍ଦ୍ର କଥା "ତତେ ମୁଁ ଅନେକ ଗାଳି ଦେଇଛି", ଶୁଣି ମୋର ଚକ୍ଷୁ ସଜଳ ହୋଇ ଉଠିଲା, ହୃଦୟ କାନ୍ଦି ଉଠିଲା । ବାବାଙ୍କର ସେହି ବ୍ୟାକୁଳ ମୁଖ ଆଡ଼କୁ ଅନାଇ କହିଲି, "ବାବା, ଥାଉ ।" କିଛିକ୍ଷଣ ପରେ କହିଲେ, "ମୁଁ ମଲେ ଭଲ ହେବୁ ।" ଅନ୍ତିମ ଶଯ୍ୟାର ସେହି ଆଦେଶ ମୁଁ ଅବନତ ମସ୍ତକରେ ଗ୍ରହଣ କରିଅଛି । ଜାଣେ ନାହିଁ ପାରିବି କି ନାହିଁ । × × ×

ପ୍ରତିଦିନ ପ୍ରାତଃକାଳରେ ଯେତେବେଳେ ଆମ୍ଭେମାନେ ତାହାଙ୍କର ସମୀପସ୍ଥ ହେଉଥିଲୁଁ, ସେତେବେଳେ ସେ ଆମ୍ଭମାନଙ୍କ ମସ୍ତକରେ ହାତ ବୁଲାଇ ନେଇ ନୀରବରେ ଆଶୀର୍ବାଦ କରୁଥିଲେ । ବୁଝିଥିରେ ଆମ୍ଭେମାନେ ସେହି ନୀରବ ଆଶୀର୍ବାଦ ଗ୍ରହଣ କରୁଥିଲୁଁ । ପ୍ରାତଃକାଳରେ ସୂର୍ଯ୍ୟାଲୋକ ଦେଖିବା ପାଇଁ ସେ ଅତ୍ୟନ୍ତ ଆଗ୍ରହ ପ୍ରକାଶ କରୁଥିଲେ । ଦ୍ୱାର ଗବାକ୍ଷାଦି ଉନ୍ମୋଚିତ ହେଲେ ଆଲୋକରଶ୍ମି ଯେତେବେଳେ ଗୃହ ମଧ୍ୟରେ ପ୍ରବେଶ କରୁଥିଲା, ତାହାଙ୍କ ମୁଖରେ କ୍ଷୀଣ ହାସ୍ୟରେଖା ଉଦ୍ଭାସିତ ହେଉଥିଲା । ଦିନେ ମୋତେ କହିଥିଲେ— More light, more air. May German father Goethe come.

ତାହାଙ୍କର ଜୀବନଚରିତ ଲେଖିବା ପାଇଁ ଅବନ୍ତୀ ଦିଦି ଆଗ୍ରହ ପ୍ରକାଶ କରିଥିଲେ । ପିତା ମଧ୍ୟ ପୀଡ଼ାର ଅବ୍ୟବହିତ ପୂର୍ବେ ତାଙ୍କୁ ଲେଖିଥିଲେ, "ଅନେକଙ୍କର ଅଜ୍ଞାତ କିନ୍ତୁ ଜ୍ଞେୟ କଥା ତତେ କହିଦେବି ।" Man proposes, God disposes ! ତାହାଙ୍କର ଯନ୍ତ୍ରଣା ସମୟରେ ପ୍ରାର୍ଥନା କିମ୍ବା ଧର୍ମ ସଙ୍ଗୀତ ଗାନ କଲେ ସେ ରୋଗର ସେହି କଷ୍ଟ ପ୍ରତି ଭ୍ରୂକ୍ଷେପ ନ କରି ଏକାଗ୍ର ଚିତ୍ତରେ ତାହା ଶ୍ରବଣ କରୁଥିଲେ । ୨୬ ତାରିଖ ରାତିରେ ପୀଡ଼ା ଅତ୍ୟନ୍ତ ବୃଦ୍ଧିପ୍ରାପ୍ତ ହୋଇଥିଲା । ଆମ୍ଭମାନଙ୍କର ଶ୍ରଦ୍ଧାସ୍ପଦ ଡାକ୍ତର ନୀରଦ ବାବୁ କହିଥିଲେ, "Injection ଦେବା ଭଳି ମଧ୍ୟ pulse ନାହିଁ," କିନ୍ତୁ ଏହିପ୍ରକାର pulse ନେଇ ସେ ଦେଢ଼ଦିନ କଟାଇ ଦେଇଥିଲେ ।

୨୮ ତାରିଖ ଉଷାର ପ୍ରାକ୍‌କାଳରେ ଗବାକ୍ଷ ନିକଟରେ ଛିଡ଼ା ହେଲି, ଜ୍ୟୋତ୍ସ୍ନା ସେତେବେଳଯାଏ ଧରିତ୍ରୀକୁ ପ୍ଲାବିତ କରୁଅଛି, ସୂର୍ଯ୍ୟାଲୋକ ତାହାର ପ୍ରଭାବ ବିସ୍ତାର କରିବାକୁ ବାଟ ଖୋଜୁଅଛି, ଚନ୍ଦ୍ରାଲୋକ ଓ ସୂର୍ଯ୍ୟ କିରଣର ଅପୂର୍ବ ମିଳନ ସମୟରେ ବାବା ଆସି ପହଞ୍ଚିଲେ । ତାହାର କିଛିକ୍ଷଣ ଉତ୍ତାରେ ପିତାଙ୍କର ଶ୍ୱାସ ବଢ଼ିବାକୁ ଲାଗିଲା । ପ୍ରାର୍ଥନା କରିବାକୁ ଲାଗିଲି, "ହେ

ପରମେଶ୍ୱର ! ତୁମ୍ଭେ ତ ଅନେକ ଅଲୌକିକ କାର୍ଯ୍ୟ ସାଧନ କରିଥାଅ, ବାବା ବଞ୍ଚାଇ ଦିଅ ତ ।"

ଈଶ୍ୱର ଯେପରି ସେ ପ୍ରାର୍ଥନା ଶୁଣିଲେ, ପିତାଙ୍କର ଶ୍ୱାସବନ୍ଦି ସ୍ତ୍ରୀ ମୁହୂର୍ତ୍ତିକ ପାଇଁ ବନ୍ଦ ହୋଇଗଲା, ପୁଣି ଗ୍ଭଲିବାକୁ ଲାଗିଲା । ୯ ଘଟିକା ସମୟରେ ଆତ୍ମୀୟ ଓ ବନ୍ଧୁବର୍ଗଙ୍କ ଶୋକୋଚ୍ଛ୍ୱାସ ମଧ୍ୟରେ ସେ ହରିନାମ ଶୁଣୁଁ ଶୁଣୁଁ ଇହଧାମ ପରିତ୍ୟାଗ କଲେ ।

---

# ସ୍ୱର୍ଗୀୟ ମଧୁସୂଦନ ରାଓ

ନୀଳକଣ୍ଠ ଦାଶ

ସେଦିନ ରାଧାନାଥଙ୍କ ମୃତ୍ୟୁରେ ଆକ୍ଷେପ କରି ଜଣେ ବନ୍ଧୁ ମୋତେ କହିଥିଲେ, "ମହାଯାତ୍ରା" ଅସମ୍ପୂର୍ଣ୍ଣ ରହିଲା । ମୁଁ ଅଳ୍ପାରେ କହିଥିଲି, "ଉତ୍କଳ ସାହିତ୍ୟର ମହାଯାତ୍ରା" ରାଧାନାଥଙ୍କ ମହାଯାତ୍ରାରେ ଅସମ୍ପୂର୍ଣ୍ଣ ଅଛି । ମଧୁବାବୁ ଓ —ଙ୍କ ସ୍ୱାସ୍ଥ୍ୟର ଅବସ୍ଥା ଯେପରି ଦେଖା ଯାଉଅଛି, ଅଚିରେ ସେ ମହାଯାତ୍ରା ପୂର୍ଣ୍ଣ ହେବ । କିଛି ଚିନ୍ତା ନାହିଁ । ଆହା ! ଏ ଅଳ୍ପାରେ କି ସତେ ଏପରି କଠୋର ସତ୍ୟ ନିହିତ ଥିଲା ? ମଧୁବାବୁ ଯେତେବେଳେ ସତ୍ୟବାଦୀରେ ହୋଇଥିବା "ପୁଷ୍ପ ଶିକ୍ଷା ସମ୍ମିଳନୀ"ର ସଭାପତି ହୋଇ ତାଙ୍କ ଅଭିଭାଷଣରେ କହିଥିଲେ, "ମୁଁ 'କଳସଠା' ଖାଡିଏ ଖେଳିଗଲି", ସେତେବେଳେ ଆମ୍ଭେମାନେ ବିସ୍ମୟ ବିଷାଦରେ ପରସ୍ପରକୁ ଗ୍ଭହିଁଥିଲୁଁ । କିନ୍ତୁ 'କଳସଠା' ଯେ ଉତ୍କଳର ଭକ୍ତକବିଙ୍କ ଜୀବନର ଅବଧି ହେବ, ଏହା କିଏ ସେତେବେଳେ ସ୍ୱପ୍ନରେ ଭାବିଥିଲା ?

ଆଧୁନିକ ଉତ୍କଳ ସାହିତ୍ୟର ଜନ୍ମଦାତା ଓ ପୋଷଣକର୍ତ୍ତା ରାଧାନାଥ ଓ ମଧୁସୂଦନ ଦୁହେଁ "କଳସଠା"ରେ ଜୀବନ ସମାପ୍ତ କଲେ । ରାଧାନାଥଙ୍କ ମୃତ୍ୟୁ ଦିନ ଶ୍ମଶାନରୁ ଫେରିଲାବେଳେ ଆମ୍ଭେମାନେ କଥାବାର୍ତ୍ତା ହେଉଥିଲୁଁ, ଯାହାହେଉ ମଧୁବାବୁ ଅଛନ୍ତି । କିନ୍ତୁ ମା ଉତ୍କଳଭୂମି, ତୋର କି ଦୁର୍ଦ୍ଦଶା, ସେ ମଧୁବାବୁ ମଧ୍ୟ ଆଜ ନାହାନ୍ତି । ସେ ଗମ୍ଭୀର ଧର୍ମପ୍ରାଣତା, ସେ ନିଷ୍କଳଙ୍କ ପ୍ରେମିକତା, ସେ ଶିଶୁ ସୁଲଭ ସରଳତା ଓ ତାହିଁ ସଙ୍ଗେ ବିସ୍ମେଚିତ ଉନ୍ମୁକ୍ତ ପ୍ରାଣତା ଓ ସ୍ପଷ୍ଟବାଦିତା ଆଉ ଉତ୍କଳଭୂମିରେ ଦେଖିବାକୁ ନାହିଁ ।

ମଧୁସୂଦନଙ୍କ ଜୀବନ ସ୍ୱପ୍ନମୟ ଥିଲା ଏବଂ ବଡ଼ ଶୀଘ୍ର ସେ ସେହି ସ୍ୱପ୍ନମୟ ରାଜ୍ୟକୁ ଚାଲିଗଲେ । ଦୁଇଟି ସ୍ୱପ୍ନ ତାଙ୍କର କୈଶୋର ଜୀବନର ଗତି ସ୍ଥିର କରିଥିଲା ! ମୁଁ ସେ ସ୍ୱପ୍ନ ବିଷୟ କୋଡ଼ିଏ ବର୍ଷ ତଳେ ତାଙ୍କଠାରୁ ଶୁଣିଥିଲି, କିନ୍ତୁ ଦୁଃଖର କଥା ନୋଟ୍ ବହିରେ ଯାହା ଲେଖିଥିଲି, ସେଥିରୁ ବର୍ତ୍ତମାନ ସ୍ପଷ୍ଟ କିଛି ବୁଝିପାରୁ ନାହିଁ । କିନ୍ତୁ ମୋର ଯେତେଦୂର ଖବରଟି ମନେ ଅଛି, ମୁଁ କହିପାରେଁ, ସେ ଦୁଇଟି ସ୍ୱପ୍ନ ତାଙ୍କ ମନରେ ଧର୍ମବିଶ୍ୱାସ ଓ ଜୀବନର ଆଶା ଦୃଢ଼ କରିଥିଲା । ଗୋଟିଏ ସ୍ୱପ୍ନରେ ସେ ପର୍ବତ ଉପରେ ମହାଦେବଙ୍କୁ ଦେଖିଥିଲେ ଏବଂ ସ୍ୱପ୍ନରେ ଅତ୍ୟନ୍ତ ପ୍ରେମବିହ୍ୱଳ ହେବାର ପ୍ରକାଶ କରିଥିଲେ । ମୁଁ ଯେତେଦୂର ଜାଣେ, ଧର୍ମବିଶ୍ୱାସ ଓ ଭକ୍ତି ତାଙ୍କ ଜୀବନର କେନ୍ଦ୍ରୀକ ଶକ୍ତି ଥିଲା । କିନ୍ତୁ ସେ ଭକ୍ତି ଇତର ଜନର ଧାର୍ମିକତା ପରି ମୂଢ଼ ଅନ୍ଧ ବିଶ୍ୱାସରେ କଦାପି ପର୍ଯ୍ୟବସିତ ନ ଥିଲା । ତାଙ୍କ ହୃଦୟରେ ସତ୍ୟପିପାସା ସର୍ବଦା ଜାଗରୂକ ଥିଲା । ସେ ବାଲ୍ୟକାଳରେ କଠୋର ଶିବଭକ୍ତ ଥିଲେ । ପୁରୀ ତାଙ୍କର ଜନ୍ମସ୍ଥାନ ଥିଲା ଏବଂ ୧୮୪୩ ଖ୍ରୀଷ୍ଟାବ୍ଦରେ ଜନ୍ମ-ଗ୍ରହଣ କରି ୧୮୬୧ ଖ୍ରୀଷ୍ଟାବ୍ଦ ଅର୍ଥାତ୍ ତାଙ୍କର ଏଣ୍ଟ୍ରାନ୍ସ ପରୀକ୍ଷା ପର୍ଯ୍ୟନ୍ତ ସେ ପ୍ରାୟ ପୁରୀରେ ଥିଲେ । ସେ କହୁଥିଲେ ଏଣ୍ଟ୍ରାନ୍ସ ପାସ୍ କରିବା ପର୍ଯ୍ୟନ୍ତ ସେ ସୁସ୍ଥ ଥିଲାବେଳେ ନିୟମିତ ରୂପେ ପୁରୀର କୁଣ୍ଢାଇବେଣ୍ଟ ସାହି ବାନାବର ମହାଦେବଙ୍କୁ ଫୁଲଦେଇ ତାଙ୍କ ଆଗରେ

"କେଉଁ କର୍ମହୀନ କରଇ ଜଣାଣ
ବାଲୁଙ୍କେଶ୍ୱରଙ୍କୁ ବୁଝିଁ ।"

ଏହି ସ୍ତୋତ୍ରଟି ବୋଲିସାରି ନ ଫେରିବା ପର୍ଯ୍ୟନ୍ତ କଦାପି ଜଳ ଗ୍ରହଣ କରୁ ନ ଥିଲେ । କାର୍ଯ୍ୟବଶତଃ ସ୍ଥାନାନ୍ତରକୁ ଗଲେ ସେ ଯେ କୌଣସି ମହାଦେବଙ୍କ ପାଖରେ ବରାବର ସେହିପରି କରୁଥିଲେ ।

ଏପରି ଗଭୀର ଓ ପ୍ରଗାଢ଼ ଧର୍ମନିଷ୍ଠା, ଧର୍ମପ୍ରାଣତା ଓ ପ୍ରଭୁ ପ୍ରେମ ସଙ୍ଗେ କିପରି ସତ୍ୟପିପାସା ତାଙ୍କ ସାଧୁହୃଦୟରେ ସେ ନବୀନ କୈଶୋରରେ ମଧ୍ୟ ଜାଗ୍ରତ ଥିଲା, ତାହା ତାଙ୍କର ପରବର୍ତ୍ତୀ ଜୀବନରୁ ସ୍ପଷ୍ଟ ବୁଝାଯିବ ।

ପ୍ରାୟ ୧୮୬୦ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ମଧୁବାବୁ ଏଫ୍. ଏ. ପଢ଼ିବାକୁ କଟକ ଯିବାର ପ୍ରାୟ ୯, ୧୦ ବର୍ଷ ପୂର୍ବରୁ ମହର୍ଷି ଦେବେନ୍ଦ୍ରନାଥ ଠାକୁର କଟକକୁ ଆସି ସେଠାରେ ଗୋଟିଏ ବ୍ରାହ୍ମ ଉପାସନା-ସଭା ସ୍ଥାପନ କରିଥିଲେ । ମଧୁ ବାବୁ କଟକ ଆସି ପ୍ରଥମେ ସେହି ସଭାରେ ବ୍ରାହ୍ମଧର୍ମର ଆଭାସ ପାଇଲେ । ଏହିଠାରେ ସେ କେତେକ ବ୍ରାହ୍ମଧର୍ମ ବିଷୟକ ପୁସ୍ତକ ପଢ଼ିବାକୁ ପାଇଥିଲେ । ସେହିସବୁ ବହି ପଢ଼ୁ ପଢ଼ୁ ଦିନେ—

"ଯତୋବା ଇମାନ ଭୂତାନ ଜାୟନ୍ତେ
ଯେନ ଜାତାନ ଜୀବନ୍ତି" ଇତ୍ୟାଦି

ଉପନିଷଦର ଶ୍ଳୋକଟି ବଙ୍ଗଳାନୁବାଦ ସହିତ ପାଠ କରି ତାଙ୍କର ପୂର୍ବ ବିଶ୍ୱାସ ପ୍ରଥମେ ବିଚଳିତ ହୋଇଥିଲା । ମୋର ସ୍ପଷ୍ଟ ମନେଅଛି, ସେ ଯେତେବେଳେ ଏକଥା ମୋତେ କହୁଥିଲେ, ସେତେବେଳେ ତାଙ୍କର ଉନ୍ମୁକ୍ତ ପ୍ରାଣର ସ୍ପଷ୍ଟ ବାଣୀ ମୋ ପ୍ରାଣକୁ ଏପରି ସ୍ପର୍ଶ କରିଥିଲା ଯେ ମୋର ରୋମାଞ୍ଚ ହୋଇଥିଲା । ଏ ସାମାନ୍ୟ କଥାଟି ଶୁଣି ଲୋକେ ଏ କଥା ଅସମ୍ଭବ ମନେ କରିବେ, କାରଣ ଏ ଲେଖାରେ ସେ ଗାମ୍ଭୀର ସ୍ପଷ୍ଟପ୍ରାଣତା ରହିବାର ନୁହେଁ । ଯେତେବେଳେ ଧର୍ମପ୍ରାଣ ମଧୁସୂଦନଙ୍କ ଧର୍ମବିଶ୍ୱାସର ପ୍ରଥମ ବିଚଳନର ସ୍ମୃତି ମର୍ମ ଆଲୋଡ଼ନ କରି ବାହାରି ଥିଲା । ମୋର ସେ ସୁଖ ସ୍ମୃତି ମୁଁ ଜୀବନରେ କଦାପି ବିସ୍ମୃତ ହେବି ନାହିଁ । ଯେଉଁମାନେ ତାଙ୍କ ମୁଖରୁ ଏହା ଶୁଣିଥିବେ, ସେମାନେ ଏହାର ସତ୍ୟ ଅନୁଭବ କରି ପାରିବେ ।

ଏହିପରି ସାମାନ୍ୟ ଘଟନାରେ ମଧୁସୂଦନ ବ୍ରାହ୍ମବିଶ୍ୱାସ ଆଡ଼କୁ ଆକୃଷ୍ଟ ହୋଇ କ୍ରମେ ସେ ଉପାସନା-ସଭାକୁ ଯିବାକୁ ଲାଗିଲେ । କିନ୍ତୁ ସେ କହୁଥିଲେ, ସେତେବେଳେ ସେ ଉପାସନା-ସଭାରେ ବିଶେଷ କୌଣସି ଧର୍ମନିଷ୍ଠା ନ ଥିଲା । ଏହା କେବଳ ଗୋଟିଏ ସଙ୍ଗୀତ ଦଳ ପରି ସପ୍ତାହରେ ଦିନେ ଧର୍ମ ସଙ୍ଗୀତରେ ଚିତ୍ତବିନୋଦନ କରିବାର ସ୍ଥାନ ଥିଲା । ସେଠାରେ କୌଣସି ଧର୍ମଭାବର ଗାମ୍ଭୀରତା ଓ ନିଷ୍ଠା ନ ଦେଖି ମଧୁବାବୁ କ୍ରମେ ସେଠାକୁ ଯିବା ବନ୍ଦ କଲେ ।

ଏହି ସମୟରେ ହରନାଥ ଭଟ୍ଟାଚାର୍ଯ୍ୟ ନାମକ ଜଣେ ବ୍ରାହ୍ମ ଅଧ୍ୟାପକ କଟକ କଲେଜକୁ ଆସିଲେ ଏବଂ ମଧୁ ବାବୁ, ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରଭୃତି ତାଙ୍କଠାରୁ କେଶବଚନ୍ଦ୍ର ସେନଙ୍କ ବକ୍ତୃତା ପଢ଼ିବାକୁ ପାଇଲେ । କିଛିଦିନ ପରେ ମଧୁସୂଦନ ଧର୍ମ ବିଶ୍ୱାସର ସ୍ପଷ୍ଟ ପରିବର୍ତ୍ତନରେ ଅନୁପ୍ରାଣିତ ହୋଇ ଉପବୀତ ପରିତ୍ୟାଗ କରି ସ୍ପଷ୍ଟତଃ ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । ଆଉ ଦୁଇ ତିନି ଜଣ ଯୁବକ ମଧ୍ୟ ତାଙ୍କ ସଙ୍ଗେ ବ୍ରାହ୍ମ ହୋଇଥିଲେ । ତେଣୁ ଅଭିଭାବକମାନେ ଅତ୍ୟନ୍ତ ବିରକ୍ତ ହେଲେ ଏବଂ କ୍ରମେ କଥା ତାତ୍କାଳିକ କମିଶନର ରେଭେନ୍‌ସା ସାହେବଙ୍କ କାନକୁ ଗଲା । ସେ କଲେଜର ପ୍ରିନ୍‌ସିପାଲଙ୍କୁ ତାକିଦ୍ କଲେ । ଏଥିମଧ୍ୟରେ ହରନାଥ ବାବୁ ପ୍ରତାପଚନ୍ଦ୍ର ମଜୁମଦାରଙ୍କୁ କଟକକୁ ଡକାଇ ଆଣିଲେ ଏବଂ ସେ ଆସି ବ୍ରାହ୍ମଧର୍ମ ସମ୍ବନ୍ଧରେ କେତେଗୁଡ଼ିଏ ବକ୍ତୃତା ଦେଇଥିଲେ । ପରେ କ୍ରମେ କ୍ରମେ ଅଭିଭାବକ ମାନେ ଅଯଥା ଉପଦ୍ରବ କରିବାକୁ କ୍ଷାନ୍ତ ହେଲେ ।

ଆମ୍ଭମାନଙ୍କୁ ଅନୁମାନ କରିବାକୁ ହେବ, ଏ ଓଡ଼ିଶାର କେଉଁ ଯୁଗର କଥା । ସେତେବେଳେ କେବଳ ବିଶ୍ୱାସ ପାଇଁ—ଅନ୍ୟ କୌଣସି ହୀନ ଉଦ୍ଦେଶ୍ୟ, ପ୍ରଲୋଭନ ବା ଉଚ୍ଛୃଙ୍ଖଳତା ପାଇଁ ନୁହେ—ଉପବୀତ ତ୍ୟାଗ କରିବା କି ମନସ୍ୱିତାର କାର୍ଯ୍ୟ ! ଆମ୍ଭେମାନେ ଏହା ସ୍ପଷ୍ଟ ବୁଝି ଅଛୁଁ—ଜାଣିଅଛୁଁ । ଧର୍ମରେ ହୀନ ପ୍ରତିମା ପୂଜା ଓ ସମାଜରେ ଜଘନ୍ୟ ଜାତିଭେଦ କି କୁତ୍ସିତ ଓ ଅମଙ୍ଗଳକର ସାମାଜିକ ଓ ଜାତୀୟ ବ୍ୟାଧି, ତାହା ସ୍ପଷ୍ଟ ବୁଝିଅଛୁ । କିନ୍ତୁ ଶତ ଚେଷ୍ଟା କଲେ ମଧ୍ୟ ଦୁର୍ବଳତା ଲଙ୍ଘନ କରି, ଉପବୀତ ପରିହାର କରି ସ୍ପଷ୍ଟ ବିଶୁଦ୍ଧ ଧର୍ମମତ ଓ ଉନ୍ମୁକ୍ତ ଉଦାର ସାର୍ବଜନୀନ ସାମାଜିକତା ପ୍ରକାଶ କରିବାକୁ ଅକ୍ଷମ । କିନ୍ତୁ ମଧୁସୂଦନ ସେହି ଘୋର ଧ୍ୱାନ୍ତମସ୍ତ ଯୁଗରେ ବିଶ୍ୱାସ ଓ କାର୍ଯ୍ୟ ଏକ କରିଥିଲେ । ଏହାହିଁ ତାଙ୍କ ମହାପ୍ରାଣତା ସ୍ପଷ୍ଟରୂପେ ପ୍ରକାଶ କରୁଅଛି । ପୁଣି ତାଙ୍କର ବିଶେଷତ୍ୱ; ସେ ଯେତେବେଳେ ଯାହା ବୁଝିଥିଲେ, ଜୀବନର ପନ୍ଥା ବୋଲି ବିଶ୍ୱାସ କରିଥିଲେ, ସେତେବେଳେ ସେଥିରେ ପ୍ରାଣ ଢାଳି ଦେଉଥିଲେ । ସତ୍ୟ ତାଙ୍କର ସର୍ବସ୍ୱ ଥିଲା । ବିଶ୍ୱାସର ଅନୁରୂପ କାର୍ଯ୍ୟ ତାଙ୍କ ଜୀବନର ନୀତି ଥିଲା । ଏହାହିଁ ମନୁଷ୍ୟତା, ଏହାହିଁ ବୀରତ୍ୱ । ଏ ମନୁଷ୍ୟତା, ଏ ବୀରତ୍ୱ ଓଡ଼ିଶାର କେତେ ସ୍ଥାନରେ ଦେଖାଯାଏ ?

ସେ ଦିନେ କହୁଥିଲେ, ବାର୍ଦ୍ଧକ୍ୟ ସଙ୍ଗେ ସଙ୍ଗେ ତାଙ୍କର ଶାରୀରିକ ଓ ମାନସିକ ଶକ୍ତି ହ୍ରାସ ପାଉଅଛି ସତ୍ୟ, କିନ୍ତୁ ଧର୍ମଭାବ କ୍ରମେ କ୍ରମେ ବଢ଼ୁଅଛି । ବୋଧହୁଏ ସେ କ୍ରମେ ଇହଧାମ ଛାଡ଼ି ଦେବଧାମକୁ ଅଗ୍ରସର ହେବାର ବହୁଦିନରୁ ଏହା ଅନୁଭବ କରୁଥିଲେ ।

ମଧୁବାବୁଙ୍କ ପରି ପଣ୍ଡିତ ବର୍ତ୍ତମାନ ଓଡ଼ିଶାରେ ଥାଉନ୍ତୁ ବା ନ ଥାଉନ୍ତୁ, ବାଲ୍ ହୋଇ ପାରନ୍ତି । ତାଙ୍କ କବିତାଠାରୁ ଦିନେ ଆହୁରି ଭଲ କବିତା ଲେଖା ହେବ, ତାଙ୍କ ସାହିତ୍ୟସେବା ଦିନେ ଅନ୍ୟର ସାହିତ୍ୟସେବା ସମକ୍ଷରେ ବରଂ ଅଳ୍ପ ବୋଲି ଲକ୍ଷିତ ହେବ । କିନ୍ତୁ ଜୀବନରେ ଯେ ଧର୍ମନିଷ୍ଠା, ସେ ସତ୍ୟସ୍ପୃହା, ଯେ ଉନ୍ମୁକ୍ତପ୍ରାଣତା ଆଉ ବେଶି ଦେଖାଯିବ କି ନାହିଁ ସନ୍ଦେହ । ସେ ଜଣେ ଧର୍ମନିଷ୍ଠ ଥିଲେ, କିନ୍ତୁ ଦାର୍ଶନିକ ଧର୍ମଦୀକ୍ଷାଗ୍ରସ୍ତ ସ୍ୱମତପ୍ରତ୍ୟୟୀର ଉଚ୍ଛୃଙ୍ଖଳ ଭାବ ମୁଁ ତାଙ୍କଠାରେ କେବେ ଦେଖିନାହିଁ । ଦିନେ ମୁଁ କଥା ପ୍ରସଙ୍ଗରେ କେତେକ କୁସଂସ୍କାରର ଓ ସମାଜର କୁସଂସ୍କାରମାନଙ୍କର ତୀବ୍ର ନିନ୍ଦା କଲି । ସେ ତାହା ଶୁଣି ମୋତେ ଧୀର ଗମ୍ଭୀର ଭାବରେ କହିଲେ—"There is a soul of truth even in superstition, ଆମ୍ଭେମାନେ କଦାପି କୁସଂସ୍କାରର ପ୍ରଶ୍ରୟ ଦେବା ନାହିଁ, କିନ୍ତୁ ସମସ୍ତଙ୍କର ଭାବ ପ୍ରତି ଶ୍ରଦ୍ଧା ଓ ଆଦର କରିବା ଉଚିତ ।"

ଆଉ ଥରେ ମୋର ଗୋଟିଏ ସାମାଜିକ ଲେଖାକୁ ଲକ୍ଷ୍ୟ କରି ସେ କହିଥିଲେ, "ମୁଁ ଏପରି Satire କେବେ ଦେଖି ନାହିଁ, କିନ୍ତୁ ଲେଖକଙ୍କ ପ୍ରାଣରେ ଏଥିରେ ବଡ଼ ତୀବ୍ର ଆଘାତ ଲାଗିଥିବ।" ଏଥିରୁ ସ୍ପଷ୍ଟ ବୁଝା ଯାଉଅଛି, ତାଙ୍କର ଧର୍ମ ବିଶ୍ୱାସ କିପରି ଧୀର, ପ୍ରଶାନ୍ତ, ଗମ୍ଭୀର, ଅହଙ୍କାରବର୍ଜିତ ଓ ନିଷ୍କଳଙ୍କ ଥିଲା। ମୁଁ ଯେତେଦୂର ଦେଖିଅଛି, କେବେହେଁ ସ୍ୱତଃପ୍ରବୃତ୍ତ ହୋଇ କାହାକୁ ସ୍ପଷ୍ଟଭାବରେ ଧର୍ମ ଉପଦେଶ ଦେବା କିମ୍ବା ବିଶ୍ୱାସର ଭ୍ରମ ବୁଝାଇ ଦେବା ତାଙ୍କର ପ୍ରକୃତି ନ ଥିଲା। କିନ୍ତୁ ତାଙ୍କର ହୃଦୟଭେଦୀ ସ୍ପଷ୍ଟ କଥାହିଁ ମହାଧର୍ମୋପଦେଶ ଥିଲା। ଜୀବନରେ ସମସ୍ତ ଶୋକ ଓ ସାଂସାରିକ ଦୁରବସ୍ଥା ମଧ୍ୟରେ ସ୍ଥିର ପ୍ରଶାନ୍ତ ଭାବ ଅଙ୍କିତ ଭାବରେ ମହାଧର୍ମଦୀକ୍ଷା ଦେଉଥିଲା।

ମୁଁ ସ୍ପଷ୍ଟ କହୁଅଛି, ମୋ ଜୀବନରେ ଧର୍ମବିଶ୍ୱାସ ବଡ଼ ଶିଥିଳ। କିନ୍ତୁ ମଧୁବାବୁଙ୍କ ସଙ୍ଗେ କେତେକ ଥର କଥାବାର୍ତ୍ତା ହୋଇ ତାହା ଦୃଢ଼ତର ହେବାର ମୁଁ ଅନୁଭବ କରିଅଛି। ଅବଶ୍ୟ ଧର୍ମ ବା ଈଶ୍ୱର ବିଷୟରେ ତାଙ୍କ ସଙ୍ଗେ କୌଣସି ଦାର୍ଶନିକ ତର୍କ କରି ମୁଁ ଉପଦେଶ ପାଇ ନାହିଁ। କିନ୍ତୁ କାହିଁକି ମୁଁ ଜାଣେ ନାହିଁ, ତାଙ୍କର ପ୍ରତ୍ୟେକ କଥାରେ କି ଏକ ଅପୂର୍ବ ଭାବ ଥିଲାପରି ମୋତେ ବରାବର ବୋଧ ହୋଇଅଛି। ସ୍ପଷ୍ଟଭାବରେ ତାଙ୍କ ସଙ୍ଗେ ସେ ବିଷୟରେ କଥାବାର୍ତ୍ତା ନ ହେଲେ ମଧ୍ୟ ସାର୍ବଜନୀନ ସାମାଜିକତାର ଭାବ ତାଙ୍କ ସମ୍ପର୍କରେ ଆସିବାରୁ ମୋ ମନରେ ଦୃଢ଼ତର ହୋଇଅଛି। ସେ ବ୍ୟକ୍ତିତ୍ୱର କି ମହିମା ଥିଲା, ତାହା ମୁଁ କହି ପାରିବି ନାହିଁ, ଅନୁଭବ କରିଅଛି।

ଯେଉଁମାନେ ତାଙ୍କୁ ଦେଖିବାର ସୁବିଧା ପାଇ ନାହାନ୍ତି, ସେମାନେ ତାଙ୍କ କବିତା ଦେଖିଲେ ସେଥିରେ ତାଙ୍କର ସେହି ବ୍ୟକ୍ତିତ୍ୱ ଦେଖିବେ। ମଧୁବାବୁ କବି ଥିଲେ। କିନ୍ତୁ ସେ କି ଶ୍ରେଣୀର କବି ଥିଲେ, ତାହା ମୁଁ କହି ପାରିବି ନାହିଁ। କାବ୍ୟରେ ନାୟକ ନାୟିକାର ଦୁର୍ବଳ-କବି-କଳ୍ପନା-ସୁଲଭ-ପ୍ରେମିକତା ଚିତ୍ର କରି ସେ କବି ହୋଇ ନାହାନ୍ତି। ତାଙ୍କ କବିତାର ପ୍ରେମିକତା ସ୍ୱତନ୍ତ୍ର। ସେ ପ୍ରେମିକତା ଯେ କୌଣସି କବି ପକ୍ଷରେ ସମ୍ଭବ ନୁହେଁ। ତାହା ଦୁର୍ବଳ-ଦାମ୍ପତ୍ୟ ପ୍ରଣୟ-ରସିକତାର ଗୁରୁଗିରି ବା ସାଧାରଣ କବି-ଜୀବନ-ସୁଲଭ ଦୁର୍ବଳତାର ଅଭିବ୍ୟକ୍ତି ନୁହେଁ। ଯେଉଁ ପ୍ରେମ ସଂସାରରେ ପବିତ୍ରତମ, ଯେଉଁ ପ୍ରେମର ଆଭାସ ନିହିତ ଅଛି ବୋଲି ଦୁର୍ବଳ କାବ୍ୟ ଲେଖକ ନିଜ ବର୍ଣ୍ଣିତ ଦାମ୍ପତ୍ୟ ପ୍ରଣୟିକତାର ପ୍ରଶଂସା କରି ନିଜେ ନିଜର ବହୁମାନ କରେ, ଯେଉଁ ପ୍ରେମ ବିଶ୍ୱଚିତ୍ତର ରନ୍ଧ୍ରେ ରନ୍ଧ୍ରେ ମନୁଷ୍ୟକୁ ଅମୃତ ନିକେତନକୁ ଟାଣୁଅଛି, ଯେଉଁ ପ୍ରେମ ଥିବାରୁ ପୃଥିବୀରେ ପ୍ରେମ ନାମରେ ଯେ କୌଣସି ଅପବିତ୍ର ବସ୍ତୁ ମଧ୍ୟ ପବିତ୍ର ବୋଲି

ତୃଷିତ ହୁଏ, ସେହି ପ୍ରେମର ଉଚ୍ଛ୍ୱାସ ମଧୁବାବୁଙ୍କ କବିତାରେ ଅକ୍ଷରେ ଅକ୍ଷରେ ପୂର୍ଣ୍ଣ । 'ଜୀବନଚିନ୍ତା', 'ଋଷିପ୍ରାଣେ ଦେବାବତରଣ', 'ନବବସନ୍ତ ଭାବନା', 'ଶଙ୍ଖଧ୍ୱନି' ପ୍ରଭୃତି କବିତା ପଢ଼ିଲେ ମଧୁବାବୁଙ୍କୁ ନ ଦେଖି ମଧ ଲୋକ ତାଙ୍କୁ ଅନୁମାନରେ ଦେଖି ପାରିବ ।

"ପୌରହିତ୍ୟ ଅତ୍ୟାଗ୍ରରେ ଚରଜର୍ଜରିତ,
ସର୍ବଥା ଜଡ଼ିତ ଉପଧର୍ମ ଅନ୍ଧକାରେ,
ଥିଲା ଏ ଭାରତଭୂମି ଯୁଗାନ୍ତପୀଡ଼ିତ,
ଯେବେ ଶାକ୍ୟସିଂହ ବୁଦ୍ଧ ତେଜି ରାଜଭୋଗ
ତପସ୍ୟା ସାଗରେ ମଜ୍ଜି ଲଭିଲେ ସେ କାଳେ
ନିର୍ବାଣତତ୍ତ୍ୱରତନ,"—

ପ୍ରଭୃତି ପଢ଼ିଲେ ମଧୁସୂଦନଙ୍କର ଧୀର, ଅଥଚ ଦୃଢ଼, ଉନ୍ମୁକ୍ତ ଅଥଚ ସଂଯତ, ତରଳ ଅଥଚ ପ୍ରଶାନ୍ତ, ଧର୍ମଭାବ ଓ ସାମାଜିକତା ଜାଣିବାକୁ ବାକି ରହେ ନାହିଁ । ଏସବୁ ଲେଖା କିପରି ସ୍ପଷ୍ଟ, ପ୍ରାଣସ୍ପର୍ଶୀ ଓ ମହତ୍ତ୍ୱ, ତାହା ପ୍ରତ୍ୟେକ ପାଠକ ଅନୁଭବ କରନ୍ତି । ଅବଶ୍ୟ ମୁଁ ଏଠାରେ ତାଙ୍କ ଲେଖାର ସମାଲୋଚନା କରୁନାହିଁ । ତାହା କରିବାର ସମୟ ଓ ସ୍ଥାନ ଭିନ୍ନ । ତେବେ ଏଠାରେ କେବଳ ତାଙ୍କ ଜୀବନର ଭାବ ଓ କବିତାର ଅଭିବ୍ୟକ୍ତି କିପରି ଏକ ଥିଲା, ତାହା ଏଥିରୁ ପାଠକମାନେ ବୁଝି ପାରିବେ ।

ଧର୍ମ ଓ ସମାଜରେ ତାଙ୍କ ପ୍ରାଣ ସାର୍ବଜନୀନତାରେ ଉନ୍ମୁକ୍ତ ଥିଲା ଏବଂ ତେଣୁ ସେ ପରମ ଉନ୍ମୁକ୍ତ, ବିଶ୍ୱଜନୀନ-ପ୍ରେମିକ, ଚର-ଭେଦ-ନୀତି-ପ୍ରବଣ ପୌରହିତ୍ୟ କବଳରୁ ମାନବର ଉଦ୍ଧାରକର୍ତ୍ତା ବୁଦ୍ଧଦେବଙ୍କର ପରମଭକ୍ତ ଥିଲେ । ବୁଦ୍ଧଦେବଙ୍କ କଥା ପଡ଼ିଲେ ତାଙ୍କ ପ୍ରାଣ ପ୍ରେମ ଓ ଭକ୍ତିରେ ଉଚ୍ଛ୍ୱସିତ ହେଉଥିଲା । ସେଦିନ 'ଟାଉନହଲ'ରେ ବୁଦ୍ଧଦେବଙ୍କ ବିଷୟରେ ବକ୍ତୃତା ଦେଲାବେଳେ ଦର୍ଶକମାନେ ଏହା ଦେଖିଥିବେ । ସେ କହିଥିଲେ, "ଈଶା କହିଥିଲେ, 'ମୋତେ ପୂଜା କର, ଈଶ୍ୱରଙ୍କୁ ପାଇବ ।' ମହମ୍ମଦ କହିଥିଲେ, 'ମୁଁ ଈଶ୍ୱରଙ୍କ ଦୂତ ।' ଶ୍ରୀକୃଷ୍ଣ କହିଥିଲେ, 'ମୁଁ ନିଜେ ଈଶ୍ୱର ।' କିନ୍ତୁ ବୁଦ୍ଧଦେବ ନିଜେ ନିଜକୁ ମନୁଷ୍ୟ ବୋଲି କହି ସାର୍ବଜନୀନ ମୈତ୍ରୀରେ ମନୁଷ୍ୟକୁ ପ୍ରେମରେ ଆଲିଙ୍ଗନ କରି ଆତ୍ମଶୁଦ୍ଧି ଓ ପ୍ରାଣରେ ନିଷ୍ଠାରେ ନିର୍ବାଣପ୍ରାପ୍ତିର ଉପଦେଶ ଦେଇଥିଲେ । ବୁଦ୍ଧଦେବଙ୍କ ଉପଦେଶ ସବୁଠାରୁ ବେଶି ନିରବଲମ୍ବ ଓ ବୌଦ୍ଧପ୍ରାଣ ସାର୍ବଜନୀନ ମୈତ୍ରୀ ଓ ସୁଦୃଢ଼ ବିଶ୍ୱାସମୟ ଆତ୍ମନିର୍ଭରତାରେ ବିଶ୍ୱପ୍ରେମ ପ୍ରତି ଉନ୍ମୁକ୍ତ ।" ଏ କଥା ତାଙ୍କର ଯେପରି ପାଣ୍ଡିତ୍ୟପୂର୍ଣ୍ଣ, ସେହିପରି

ପ୍ରାଣସ୍ପର୍ଶୀ; ଏ କଥା ଯେଉଁମାନେ ତାଙ୍କ ମୁହଁରୁ ଶୁଣିଥିବେ ସେମାନେ ଅନୁଭବ କରିଥିବେ, କପରି ଏଥିରେ ପାଣ୍ଡିତ୍ୟ ଥିଲା, କିନ୍ତୁ ଛଳନା ନ ଥିଲା । ଏ ତାଙ୍କର ଏକମାତ୍ର କଥା ନୁହେଁ । ଯେ କୌଣସି ବିଷୟରେ ତାଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ତାଙ୍କର ଏହି ଛଳନାବିହୀନ ନିରହଙ୍କାର ସ୍ପଷ୍ଟପ୍ରାଣ ପ୍ରକାଶିତ ହେଉଥିଲା ।

ଏହି ଧର୍ମଭାବ ଓ ନିଷ୍ଠା ହେତୁରୁ ସେ ସର୍ବଦା ବାଳକସୁଲଭ ସରଳତାରେ ଭୂଷିତ ଥିଲେ । ସେ ଯେତେବେଳେ ମୟୂରଭଞ୍ଜ ମହାରାଜାଙ୍କ ମୃତ୍ୟୁ ପରେ 'ଶୋକ-ଶ୍ଳୋକ' ଲେଖୁଥିଲେ, ସେତେବେଳେ ମୋର ତାଙ୍କ ସଙ୍ଗେ ଦେଖା ହୋଇଥିଲା । ସେ କଥାପ୍ରସଙ୍ଗରେ ମୋତେ କହିଲେ, "ମୁଁ ମହାରାଜାଙ୍କ ପାଇଁ ଗୋଟିଏ ପଦ୍ୟ ଲେଖୁଛି, ଅଳ୍ପ ବାକି ଅଛି, ଟିକିଏ ଶୁଣିବ ?" ମୁଁ କିଛି ନ କହି ରହିଲି, ମୋ ପକ୍ଷରେ ତାହା କମ୍ ସମ୍ମାନର କଥା ପରି ବୋଧ ହେଲା ନାହିଁ । କିନ୍ତୁ ସେ ମୋର ମୌନରେ ସମ୍ମତ ବୁଝି ପାରି ଘରକୁ ଯାଇ ପଦ୍ୟଟି ଆଣି ପଢ଼ିବାକୁ ଲାଗିଲେ ଏବଂ ଠିକ୍ ଗୋଟିଏ ବାଳକପରି ମଝେ ମଝେ ପଚାରି ପକାଉଲେ । ସେଦିନ ତାଙ୍କର ଯେଉଁ ସରଳତା ମୁଁ ଦେଖିଥିଲି, ତାହା ଏ ପର୍ଯ୍ୟନ୍ତ ସ୍ପଷ୍ଟ ମୋର ମନରେ ଅଙ୍କିତ ଅଛି ।

ଆଉ ଥରେ ସେ ଭୁବନେଶ୍ୱର ଯାଉଥିଲେ, କଟକ ଷ୍ଟେସନରେ କେତେକ କଲେଜ ପିଲାଙ୍କୁ ଦେଖିଲେ, ବୁଝିଲେ ସେମାନ ମଧ୍ୟ ଭୁବନେଶ୍ୱର ଯାଉଅଛନ୍ତି । ସେଠାରୁ ମହା ଉଲ୍ଲାସରେ ସେ କହିଲେ, "ଚାଲ, ମୋର ସେଠାରେ ଘର ଅଛି, ସହରରୁ ଟିକିଏ ଦୂର । ଭୁବନେଶ୍ୱର ଭଲ ସ୍ଥାନ ।" ଏହା କହି ଗାଡ଼ିରେ ଚଢ଼ିଲେ ଏବଂ ଓହ୍ଲାଇବାବେଳେ ଯାନ ବା ଗୋରୁ ଗାଡ଼ିରେ ନ ଚଢ଼ି ପିଲାଙ୍କ ସଙ୍ଗରେ ଚାଲିବାକୁ ଲାଗିଲେ । ବାଳକମାନେ ଯେତେ ଅନୁରୋଧ କଲେ ମଧ୍ୟ ସେ ଗାଡ଼ିରେ ଚଢ଼ିଲେ ନାହିଁ । କହିଲେ, "ଚାଲ, ବୁଢ଼ା ହୋଇଗଲେ ଆଉ କେବେ ଏପରି ସୁଖ ପାଇବା ?" ରୋଗଗ୍ରସ୍ତ ଅବସ୍ଥାରେ ଏପରି ବାଳକମାନଙ୍କ ସଙ୍ଗରେ ସୁଖ ଅନୁଭବ କରିବା କି ମହତ୍ତ୍ୱ, ତାହା ସମସ୍ତେ ଅନୁମାନ କରି-ପାରିବେ । ନିତାନ୍ତ ଉଚ୍ଚ ହୃଦୟ ନ ହେଲେ ଏପରି ବାଳକ-ସୁଲଭ ସରଳତା ତାହିଁରେ ରହିବା ଅସମ୍ଭବ ।

ଏ ସବୁ ସରଳତା ମଧ୍ୟରେ ଗମ୍ଭୀର କର୍ତ୍ତବ୍ୟନିଷ୍ଠା ତାଙ୍କର କେବେ ତ୍ରୁଟି ନ ଥିଲା । ଯେତେବେଳେ ଯେଉଁ ସାଂସାରିକ କର୍ମକ୍ଷେତ୍ରରେ ଭଗବାନ୍ ତାଙ୍କୁ ରଖିଥିଲେ, ତେତେବେଳେ ସେ ତାହା ଗମ୍ଭୀର ଆନ୍ତରିକ ନିଷ୍ଠାପରତା ସହିତ ସମାଧାନ କରିଥିଲେ । ସେ ଶିକ୍ଷା ବିଭାଗରେ ଚାରିଦିନ କାର୍ଯ୍ୟ କରିଥିଲେ । କିନ୍ତୁ

ସାଧାରଣ କର୍ମଚାରୀଙ୍କ ପରି ନିୟମ, ଆଦେଶ ଓ ସର୍କ୍ୟୁଲରର ଅକ୍ଷର ଧରି ତାହା ପ୍ରତିପାଳନ କରି ଉପରସ୍ଥ କର୍ମଚାରୀଙ୍କ ପ୍ରୀତି ସମ୍ପାଦନ କରିବା ତାଙ୍କର କେବେହେଁ ଉଦ୍ଦେଶ୍ୟ ନ ଥିଲା । ସେ ସର୍ବଦା ବିଧି ଓ ନିୟମର ପ୍ରକୃତ ମର୍ମ ବୁଝି ଏବଂ ଦେଶ ଓ ଲୋକଙ୍କ ଅବସ୍ଥା ପ୍ରତି ସମ୍ପୂର୍ଣ୍ଣ ଲକ୍ଷ୍ୟ ରଖି କର୍ମକ୍ଷେତ୍ରରେ ପ୍ରକୃତ କର୍ତ୍ତବ୍ୟ ବିଶ୍ୱସ୍ତ ଭାବରେ ସମ୍ପାଦନ କରୁଥିଲେ । ଆପଣମାନେ ଦେଖିଥିବେ, ସେ ଦିନ ସରକାର ଆଦେଶ ଦେଲେ ଯେ ଏଫ୍. ଏ. ପାଶ୍ ନ କଲେ କେହି ମାଇନର ସ୍କୁଲର ହେଡ଼ମାଷ୍ଟର ହୋଇ ପାରିବେ ନାହିଁ । ସଙ୍ଗେ ସଙ୍ଗେ କେତେକ ତଥାକଥିତ କର୍ତ୍ତବ୍ୟନିଷ୍ଠ ଶିକ୍ଷା ବିଭାଗର କର୍ମଚାରୀ ମହାଶୟମାନେ ଗୋଟି ଗୋଟି କରି ମାଇନର ସ୍କୁଲ୍ ଉଠାଇ ଦେବାକୁ ଲାଗିଲେ, ଦେଶରେ ଶିକ୍ଷାର ଉଚ୍ଛେଦ ସାଧନ କରି ନିଜର ଶିକ୍ଷାବିଭାଗୀୟ କର୍ତ୍ତବ୍ୟପରାୟଣତା ପ୍ରକାଶ କଲେ । କିନ୍ତୁ ମଧୁ ବାବୁ ଏପରି କର୍ମଚାରୀ ନ ଥିଲେ । ସେ ବୁଝୁଥିଲେ ଯେ କୌଣସି ଶିକ୍ଷା ବିଭାଗୀୟ ଆଦେଶର ଅର୍ଥ ଶିକ୍ଷାର ବିସ୍ତାର, ଶିକ୍ଷାର ବୃଦ୍ଧି, ଶିକ୍ଷାର ବିନାଶ ନୁହେ । ସମସ୍ତ ଆଦେଶ ଦେଶ, କାଳ ପାତ୍ର ବୁଝି ଶିକ୍ଷାର ଉନ୍ନତିକଳ୍ପେ ପ୍ରୟୋଗ କରିବାକୁ ହେବ । ସେଥିପାଇଁ ସେ ଯେତେବେଳେ କଟକର ଡେ: ଇ: ଥିଲେ, ଶିକ୍ଷାର ବାହିତ ପ୍ରଚାର ନ ହେବାର ଦେଖି ସ୍ଥାନେ ସ୍ଥାନେ ନିଜେ ନୈଶ ବିଦ୍ୟାଳୟ ସ୍ଥାପନ କରି ତାହାର ପରିଚାଳନା ଓ ତତ୍ତ୍ୱାବଧାନ ନିଜର ପରିଦର୍ଶନର ଅଙ୍ଗୀଭୂତ ରଖିଥିଲେ ଏବଂ କଟକ ଟ୍ରେନିଂ ସ୍କୁଲରେ "ଆଲୋଚନା ସଭା" ବସ୍ତୁତଃ ତାଙ୍କର କୀର୍ତ୍ତି କହିଲେ ଚଳେ । ଏହିପରି ଆପାତ କଠୋର କର୍ତ୍ତବ୍ୟକୁ ଅନ୍ତର୍ନିହିତ ଲୋକହିତ ତତ୍ପରତାରେ ରସାଣିତ କରି ସେ ନିଜର କର୍ତ୍ତବ୍ୟ କାର୍ଯ୍ୟରେ ପରିଣତ କରୁଥିଲେ । ଏହାହିଁ ଧାର୍ମିକ ଓ ନିଷ୍ଠାପର ଲୋକର ପ୍ରକୃତ କର୍ତ୍ତବ୍ୟପରାୟଣତା । ଏହାହିଁ ଚରିତ୍ରବାନ୍ ମାନବର ବିଶୁଦ୍ଧ କର୍ତ୍ତବ୍ୟନିଷ୍ଠା ।

ଯେ କୌଣସି ଗୋଟିଏ ସଦନୁଷ୍ଠାନ ଦେଖିଲେ ସେଥିରେ ପ୍ରାଣପଣେ ଯୋଗଦେବାକୁ ମଧୁବାବୁଙ୍କ ମନ ବ୍ୟାକୁଳ ହୋଇ ଉଠୁଥିଲା । କଟକ ଯୁବମାନଙ୍କର Young Utkal Associationରେ ସେ ଇଚ୍ଛାକରି ସଭ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ । ତାଙ୍କର ଅସାଧାରଣ ଆଗ୍ରହ ଦେଖି କଟକର ଯୁବକମାନେ ବୃଦ୍ଧ ମଧୁସୂଦନଙ୍କୁ ମଧ୍ୟ ସେମାନଙ୍କ ଯୁବକ ସମିତିର ସଭ୍ୟ ପଦରେ ବରଣ କରିଥିଲେ । କ୍ଷୁଦ୍ର ସତ୍ୟବାଦୀ ସ୍କୁଲର କଳ୍ପନା ହେଲାଦିନୁ ସେ ଯେତେବେଳେ କ୍ଷୁଦ୍ର ସତ୍ୟବାଦୀ ସ୍କୁଲ୍ ସମ୍ପୃକ୍ତ କୌଣସି ଲୋକକୁ ଦେଖନ୍ତି, ସେତେବେଳେ ସ୍କୁଲ୍ କଥା ପଚାରୁଥାନ୍ତି । ଯେତେ କ୍ଷୁଦ୍ର ହେଲେ ମଧ୍ୟ ସତ୍କାର୍ଯ୍ୟ ମାତ୍ରକେ ତାଙ୍କ ପ୍ରାଣର ଆଦରଣୀୟ ବସ୍ତୁ ଥିଲା ।

ସତ୍ୟବାଦିତା ଓ ନିଜ ଦୋଷର ଅନୁସନ୍ଧାନ ତାଙ୍କ ନୀତିପରାୟଣତାର ମୂଳମନ୍ତ୍ର ଥିଲା । ଏପରି କି ସେ କବିତା ଛଳରେ ମଧ୍ୟ ସାଧାରଣ କବି-କଳ୍ପନା ସୁଲଭ ମିଥ୍ୟା ବା ଅତିରଞ୍ଜନର ଆଶ୍ରୟ ନେଇ ନ ଥିଲେ । ସାଧୁ, ସତ୍ୟପରାୟଣ, ଦିଶ୍ଵପ୍ରେମନିଷ୍ଠ ସରଳପ୍ରାଣର ସ୍ଵାଭାବିକ ପବିତ୍ର ଉଚ୍ଛ୍ଵାସ ତାଙ୍କର ଉନ୍ନତ ଓ ମହିମା-ମୟ କବିତାରେ ରନ୍ଧ୍ରେ ରନ୍ଧ୍ରେ ସ୍ପଷ୍ଟ ପ୍ରତିଭାତ ହୋଇଅଛି । ସତ୍ୟନିଷ୍ଠା ତାଙ୍କ ପ୍ରାଣରେ ଏତେ ପ୍ରବଳ ଥିଲା ଯେ ସରକାରୀ କାର୍ଯ୍ୟ କଲାବେଳେ ମଧ୍ୟ କୌଣସି ପ୍ରାର୍ଥୀ ତାଙ୍କ ନିକଟରେ ଉପସ୍ଥିତ ହେଲେ ସେ ତାକୁ କେବେ ସାଧାରଣ ରାଜ-କର୍ମଚାରୀ ପରି ମିଥ୍ୟା ସମ୍ବଳିତ ଉତ୍ତରରେ ସନ୍ତୁଷ୍ଟ କରିବାକୁ ଲୋଡ଼ୁ ନ ଥିଲେ । ସ୍ପଷ୍ଟ ସତ୍ୟ ଅପ୍ରିୟ ହେଲେ ମଧ୍ୟ ସେ ଏକାବେଳକେ ତାହା କହି ପକାଉଥିଲେ । ନିଜ ଦୋଷ ସର୍ବଦା ସୂକ୍ଷ୍ମ ଦୃଷ୍ଟିରେ ଦେଖି ସାବଧାନ ରହିବା ତାଙ୍କ ଚରିତ୍ରର ଗୋଟିଏ ବିଶିଷ୍ଟ ଲକ୍ଷଣ ଥିଲା । ଟିକିଏ ମୁହୂର୍ତ୍ତିକ ପାଇଁ ହଠାତ୍ ରାଗିଯିବା ତାଙ୍କର ଗୋଟିଏ ଦୋଷ ଥିଲା ବୋଲି ସେ ମନେ କରୁଥିଲେ ଏବଂ ସେଥିପାଇଁ ସେ କେତେ ଅନୁତାପ କରିଅଛନ୍ତି, କେତେ କାନ୍ଦି ଅଛନ୍ତି ଏବଂ କେତେ ବା ପ୍ରାର୍ଥନା କରି-ଅଛନ୍ତି, ସଂସାର ତାହା ସମସ୍ତ ନ ଜାଣିଲେ ମଧ୍ୟ ତାଙ୍କର ଅଧିକାଂଶ ବନ୍ଧୁମାନଙ୍କ ନିକଟରେ ତାହା ସମ୍ପୂର୍ଣ୍ଣ ଗୁପ୍ତ ନୁହେଁ ।

ଗଭୀର ଧର୍ମନିଷ୍ଠାର ଫଳସ୍ଵରୂପ କାୟମନୋବାକ୍ୟରେ ପବିତ୍ରତା ସେ ଅତ୍ୟନ୍ତ ସଂଯମର ସହିତ ଅଭ୍ୟାସ କରି ସେଥିରେ ସିଦ୍ଧି ଲାଭ କରିଥିଲେ । ଏପରି କି ଲେଖାରେ ମଧ୍ୟ ସେହି ପବିତ୍ରତା ହେତୁରୁ ତାଙ୍କର ଭାଷା ସଂସ୍କୃତାଭିମୁଖୀ ହୋଇ ଯାଇଅଛି । ଶବ୍ଦ ଯୋଜନାରେ ପବିତ୍ରତା ଓ ମହତ୍ତ୍ଵ ସମ୍ପାଦନ କରିବାକୁ ଯାଇ ସେ କେବଳ ଇତର ଜନର ବ୍ୟବହାର୍ଯ୍ୟ କାହିଁକି, ସାଧାରଣ ଲୋକଙ୍କ ଭାଷାକୁ ମଧ୍ୟ ଲେଖାରେ ପ୍ରାୟ ସ୍ଥାନ ଦେଇ ନାହାନ୍ତି । ଏ ସବୁ ତାଙ୍କ ଭାଷା ସମାଲୋଚନାବେଳେ କୁହା ଯାଇପାରେ, କିନ୍ତୁ ଭାଷା, ଭାବ, ଶବ୍ଦଯୋଜନା, ସବୁଥିରେ କିପରି ନିଷ୍ଠା ଓ ପବିତ୍ରତା ତାଙ୍କର ମହୀୟାନ୍ ବ୍ୟକ୍ତିତ୍ଵ ବ୍ୟକ୍ତ କରିଅଛି, ତାହା ଏହିଥିରୁ ପାଠକମାନେ ଅନାୟାସରେ ବୁଝି ପାରିବେ ।

ଉତ୍କଳରେ ସ୍ଵନାମଧନ୍ୟ ସ୍ଵର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ତାଙ୍କର ଜଣେ ପରମ ସଖା ଥିଲେ । ଜୀବନରେ ବହୁ ସମୟରେ ପ୍ୟାରୀବାବୁଙ୍କ କଥା କହୁକହୁ ସେ କାନ୍ଦି ପକାଉଥିଲେ । ମରିବା ପର୍ଯ୍ୟନ୍ତ ପ୍ୟାରୀବାବୁ, ମଧୁବାବୁଙ୍କ ପାଖରେ ବସାଇ ରଖିଥିଲେ ଏବଂ ଅନ୍ତିମକାଳ ପର୍ଯ୍ୟନ୍ତ ମଧୁବାବୁ ପ୍ୟାରୀବାବୁଙ୍କ ସମସ୍ତ ସେବା ଶୁଶ୍ରୂଷା ନିଜେ ଏକାକୀ କରିଥିଲେ । ଏପରି କି ମଳମୂତ୍ର ପର୍ଯ୍ୟନ୍ତ ହାତରେ ପରିଷ୍କାର କରିଥିଲେ । ଶେଷରେ ମଧୁବାବୁଙ୍କ କ୍ରୋଡରେ ମୁଣ୍ଡ ରଖି ୧୮୮୯

ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୯ ତାରିଖରେ ଦେବପ୍ରାଣ ପ୍ୟାରୀମୋହନ ଚରମ ନିଦ୍ରାରେ ଅଭିଭୂତ ହୋଇଥିଲେ ।

ଏହି ସବୁ କଥା କହିଲାବେଳେ ମୁଁ ସ୍ପଷ୍ଟ ପ୍ରତ୍ୟକ୍ଷ କରିଅଛି, ମଧୁବାବୁ ବିଷାଦୋନ୍ମାଦର ଆହ୍ଲାଦରେ ବିହ୍ୱଳ ହୋଇ ପଡ଼ୁଥିଲେ । ସେ ପ୍ୟାରୀବାବୁଙ୍କ ସଙ୍ଗୀ ବୋଲି ଯେପରି କି ନିଜକୁ ଧନ୍ୟ ମନେ କରୁଥିଲେ ଏବଂ ପ୍ରାଣର ଅଦ୍ଭୁତ ପ୍ରେମବନ୍ଧନ ହେତୁରୁ ତାଙ୍କର ମୃତ୍ୟୁ-ସ୍ମୃତିରେ ମଧୁ ବାବୁଙ୍କ ମର୍ମସ୍ଥଳ ଆଲୋଡ଼ିତ ହେଉଥିଲା । ଏହି ୩୧ ବର୍ଷକାଳ ପ୍ରତିବର୍ଷ ଖ୍ରୀଷ୍ଟମସ୍ ସମୟରେ ମଧୁ ବାବୁଙ୍କର ସେହି ସବୁ ପ୍ୟାରୀ ବାବୁଙ୍କର ରୋଗଶଯ୍ୟା ଓ ମୃତ୍ୟୁର ଚିତ୍ର ବିଶେଷଭାବରେ ମନେ ପଡ଼ୁଥିଲା । ସେ କହୁଥିଲେ, ଦୁଇବର୍ଷ ତଳେ ସେ ଏହି ଖ୍ରୀଷ୍ଟମସ୍ ସମୟରେ ପ୍ୟାରୀ ବାବୁଙ୍କୁ ସ୍ୱପ୍ନରେ ଦେଖିଥିଲେ । ପ୍ୟାରୀ ବାବୁ କହିଲେ, "ମଧୁ, ଆଜି ପରା ଡିସେମ୍ବର ୨୮ ତାରିଖ ?" ସେଦିନ ୨୮ ତାରିଖ ନ ହୋଇଥିବାରୁ ମଧୁ ବାବୁ କହିଲେ "ନା, ଆଜି ୨୮ ତାରିଖ ନୁହେ, ୨୭ ତାରିଖ ।" ପ୍ୟାରୀ ବାବୁଙ୍କ ସଙ୍ଗେ ରାଧାନାଥ ବାବୁ ଥିଲାପରି ତାଙ୍କୁ ଲାଗିଥିଲା ଏବଂ ସ୍ୱପ୍ନରେ ଦୁହେଁ ସେମାନଙ୍କ ସଙ୍ଗେ ଥିବା ଅନ୍ୟ ଏକ ଜଣଙ୍କୁ ଦେଖାଇ କହିଲେ, "ଏହାଙ୍କୁ ଚିହ୍ନି ପାରୁଛ ?" ମଧୁବାବୁ ତହୁଁ ତାଙ୍କୁ ଚିହ୍ନିଲେ ଯେ ସେ ତାଙ୍କର ଜଣେ ମୃତ ପାରିବାରିକ ଆତ୍ମୀୟ । ଏ ସ୍ୱପ୍ନ ଦେଖି ସାର ମଧୁ ବାବୁ କିଛି ଦିନ ପରେ ବଡ଼ ବିସ୍ମିତ ହୋଇ ଏହା କହୁଥିଲେ । ସେ କହିଲେ "ଏପରି ସ୍ୱପ୍ନ କାହିଁକି ଦେଖିଲି କେଜାଣି ?" ଆମ୍ଭେ-ମାନେ କହିଲୁଁ. "ପ୍ୟାରୀ ବାବୁ ଏହି ସମୟରେ ମରିଥିଲେ ଏବଂ ଆପଣ ବୋଧହୁଏ ସେହି କଥା ଭାବୁଥିଲେ ।"

ଏହି ସ୍ୱପ୍ନ ସଙ୍ଗରେ ଆଉ କେତେକ କଥା ଥିଲା । କିନ୍ତୁ ଦୁଃଖର ବିଷୟ, ମୋର ନୋଟ୍‌ରେ ସବୁକଥା ସ୍ପଷ୍ଟ ଭାବରେ ଲେଖାନାହିଁ । କିନ୍ତୁ କି ବିଚିତ୍ର, କି ଅଦ୍ଭୁତ କଥା ! ସେହି ପ୍ୟାରୀମୋହନଙ୍କ ମୃତ୍ୟୁଦିବସର ପୂର୍ବଦିନ ଏବଂ ଠିକ୍ ସେହି ୧୮ ତାରିଖ ଡିସମ୍ବରରେ (୧୯୧୨) ମଧୁସୂଦନ ଅମରସଙ୍ଗୀ ପ୍ୟାରୀମୋହନଙ୍କ ପ୍ରେମ ବନ୍ଧନରେ ଯେପରି କି ଆକୃଷ୍ଟ ହୋଇ ସେହି ଶୁଦ୍ଧ ପ୍ରେମମୟ ରାଜ୍ୟକୁ ଚାଲିଗଲେ । ମଧୁସୂଦନଙ୍କର ସ୍ୱପ୍ନମୟ ଜୀବନ । ସ୍ୱପ୍ନରେ ତାଙ୍କର ପ୍ରଥମ ଧର୍ମ ଜୀବନର ମୂଳଭିତ୍ତି ଏବଂ ସ୍ୱପ୍ନରେ ହିଁ ତାଙ୍କର ସେହି ପ୍ରେମମୟ ଦେବଜୀବନର ଇହଧାମରେ ପରିସମାପ୍ତି । ଯେପରି କି ଏହି ଶେଷଲକ୍ଷିତ ସ୍ୱପ୍ନର ସତ୍ୟତା ସମ୍ପାଦନ ନିମନ୍ତେ ମହାପ୍ରାଣ ଦେବସଙ୍ଗୀ ପ୍ୟାରୀମୋହନଙ୍କ ଇଙ୍ଗିତରେ ମଧୁସୂଦନ ବିଶ୍ୱମୟ ଆତ୍ମାରେ ନିଜର ଆତ୍ମାକୁ ଏକ କରିବାକୁ ସେହି ମହା ସ୍ୱପ୍ନମୟ ରାଜ୍ୟକୁ ଚାଲିଗଲେ । ପ୍ୟାରୀମୋହନ ଦୁଇ ବର୍ଷ ତଳେ ବୋଧହୁଏ ଭୁଲ କରି-

ଥିଲେ । କିନ୍ତୁ ଏଥର ଠିକ୍ ଏହି ୨୮ ତାରିଖରେ ପ୍ରାଣସଖା ମଧୁସୂଦନଙ୍କୁ ଅନନ୍ତ ପ୍ରେମର ଆସ୍ୱାଦନ ପାଇଁ ନିଜର ଧାର୍ଯ୍ୟ ଲବ୍ଧ ଦେବଧାମକୁ ଆହ୍ୱାନ କଲେ ।

ଉତ୍କଳ ଆକାଶରୁ ଗୋଟିଏ ମହୋଜ୍ଜ୍ୱଳ ନକ୍ଷତ୍ର ଅସ୍ତମିତ ହେଲା । ରାଧାନାଥ ଯାଇଥିଲେ, ସେ ଶୋକସନ୍ତପ୍ତ ନ ହେଉଣୁ ମଧୁସୂଦନ ତାଙ୍କର ଅନୁଗମନ କଲେ । ଏ ସବୁ କ୍ରମେ ସର ଯାଉଅଛି; କିନ୍ତୁ ଆଉ ସେ ସ୍ଥାନ ପୂର୍ଣ୍ଣ ହେଉନାହିଁ । ଭବିଷ୍ୟତରେ କେଉଁ ଯୁଗରେ ପୂର୍ଣ୍ଣ ହେବ; ତାହା ମଧ୍ୟ ଜଣା ନାହିଁ । ବିଶେଷତଃ ମଧୁସୂଦନଙ୍କୁ ହରାଇ ଓଡ଼ିଶା ଯେ ଆଦର୍ଶ ମନୁଷ୍ୟତା ହରାଇଲା, ତାହା ନିକଟ ଭବିଷ୍ୟତରେ ଆଉ ଓଡ଼ିଶାରେ ଦେଖାଯିବ କି ନାହିଁ ସନ୍ଦେହ । ସେ ସ୍ପଷ୍ଟ ପ୍ରାଣ, ସେ ଗଭୀର ସାଧୁତା, ସେ ନିରବଲମ୍ବ ସାର୍ବଜନୀନତା, ସେ ଉନ୍ନତ ପବିତ୍ର ପ୍ରେମୋଚ୍ଛ୍ୱାସ ଦେଖିଲେ ମନୁଷ୍ୟ ଅନୁପ୍ରାଣିତ ହେବାର କଥା । ସେ ମାହାତ୍ମ୍ୟ ଦୀପରୁ ଦୀପାନ୍ତର ପରି ସ୍ୱତଃ ପ୍ରସାରିତ ହେବାର ବସ୍ତୁ । କିନ୍ତୁ କାହିଁ ? ଉଷର ଭୂମିରେ ବୀଜ ନ ଉଠିଲା ପରି ସେ ମନୁଷ୍ୟତାର ଅଙ୍କୁର ଉତ୍କଳଭୂମିରେ ହେଲାପରି ବୋଧ ହୁଏନାହିଁ । ଉତ୍କଳର ସାହିତ୍ୟ ପିତା ମଧୁସୂଦନ ସାହିତ୍ୟପାଇଁ ଯେତେ ବଡ଼ ଥିଲେ, ଚରିତ୍ର, ମନୁଷ୍ୟତା, ନିମ୍ନ୍ରତା, ଧର୍ମବିଶ୍ୱାସ, ସତ୍ୟସ୍ପୃହା, ନିଷ୍ଠାର ଗରିମା ଓ ପବିତ୍ରତା ପ୍ରଭୃତିରେ ତାହାଠାରୁ ଅନେକ ବଡ଼ ଥିଲେ । ଦୟା ତାଙ୍କ ହୃଦୟର ଅବିଚଳିତ ସ୍ୱାଭାବିକ ବୃତ୍ତି ଥିଲା । ବିଶ୍ୱଜନୀନ ମୈତ୍ରୀ ତାଙ୍କର ଅଭ୍ୟାସ ଯୋଗର ସିଦ୍ଧି ଥିଲା । ଦେବୋପମ ମହାପ୍ରାଣତା ତାଙ୍କର ଅନନ୍ୟ ସାଧାରଣ ମନୀଷାର କେନ୍ଦ୍ରସ୍ଥଳୀ ଥିଲା ।

ସେ ମଧୁସୂଦନଙ୍କୁ ହରାଇ ଉତ୍କଳର କି କ୍ଷତି ହୋଇଅଛି, ତାହା କି ଭାଷାରେ ବ୍ୟକ୍ତ ହେବ ? ଉତ୍କଳଗୌରବ ମଧୁସୂଦନ ଉତ୍କଳରୁ ତିରୋହିତ ହୋଇଅଛନ୍ତି, ଏ କଥା ଚିନ୍ତାକଲେ ପ୍ରାଣ ବ୍ୟାକୁଳ ହୁଏ,—ଶରୀର ନିଷ୍ପନ୍ଦ ହୁଏ,—ଚିନ୍ତା ଜଡ଼ ହୁଏ । ଉତ୍କଳର ଏ ଘୋର କ୍ଷତି କେବେ ପୂର୍ଣ୍ଣ ହେବ କି ନାହିଁ; ତାହା ସେହି ଜଗତ୍‌ପିତା ଭଗବାନ ଜାଣନ୍ତି । ଆମ୍ଭେମାନେ ମଧୁବାବୁଙ୍କର ଉତ୍ତରାଧିକାରୀ, କିନ୍ତୁ ଏ ଗଭୀର ଦୁଃଖରେ ମଧ୍ୟ ତାଙ୍କ ଆତ୍ମାର ସଦ୍‌ଗତି କାମନା କରିବାକୁ ସୁଦ୍ଧା ଆମ୍ଭମାନଙ୍କର ସାହସ ହେଉନାହିଁ । ଇହଲୋକରେ ପ୍ରେମରାଜ୍ୟ ବାସୀ ମଧୁସୂଦନ ସେହି ପ୍ରେମରାଜ୍ୟର ଆକର୍ଷଣରେ ଅନନ୍ତ ଚିନ୍ମୟ ଧାମ ଅଧିକାର କରିଅଛନ୍ତି । ସେ ନିଜ ଜୀବନରେ ନିଜର ସଦ୍‌ଗତି ତଥା ସମସ୍ତ ଉତ୍ପୀଡ଼ିତ ମାନବପ୍ରାଣର ସଦ୍‌ଗତିର ପନ୍ଥା ନିର୍ଦ୍ଦେଶ କରିଅଛନ୍ତି । ଆମ୍ଭେମାନେ ଯଦି ସେହି ନିର୍ଦ୍ଦେଶ ପ୍ରାଣରେ ଅନୁଭବ କରିପାରୁଁ, ତେବେ ମଧୁସୂଦନଙ୍କ ଆତ୍ମାର ପ୍ରକୃତ ସଦ୍‌ଗତିକାମନା ହେବ । ତେବେ ଆମ୍ଭେମାନେ ମଧୁସୂଦନଙ୍କର

ପ୍ରକୃତ ଉତ୍ତରାଧିକାରୀ ବୋଲି ପରିଚୟ ଦେବାକୁ ସମର୍ଥ ହେବୁଁ । ଭଗବାନ୍ ଆମ୍ଭମାନଙ୍କ ହୃଦୟର କାମନା, ପ୍ରାଣର ପିପାସା ପୂର୍ଣ୍ଣ କରନ୍ତୁ । ଦେବରାଜ୍ୟବାସୀ ମଧୁସୂଦନଙ୍କ ଆତ୍ମାର ସଦ୍‌ଗତି ହେଉ ।

---

# କେତୋଟି କଥା

ଗୋଦାବରୀଶ ମିଶ୍ର

ଦୁଇଟି ମହାଶକ୍ତି ବଳରେ ଜଗତ୍ ନିରନ୍ତର ଊର୍ଦ୍ଧ୍ୱକୁ ଉଠୁଅଛି । ତହିଁ ମଧ୍ୟରୁ ଗୋଟିଏ ଆନ୍ତରିକ ଶକ୍ତି ଏବଂ ଏହାରି ବଳରେ କ୍ରମୋନ୍ନତି ପଥରେ ସେ ତାହାର ଅଭିପ୍ରେତ, ନିରୂପିତ ଲକ୍ଷ୍ୟ ଆଡ଼କୁ ଧୀରେ ଧୀରେ ଗତି କରନ୍ତି । ମାତ୍ର ଅପର ଶକ୍ତିଟିଏ ଆସି ପ୍ରତି ନିମେଷରେ ତାହା ମସ୍ତକରେ ଅଙ୍କୁଶ ଆଘାତ କରୁଅଛି; ବେଳେବେଳେ ଅବା ଅଦୃଷ୍ଟ, ଅପରିଜ୍ଞାତ, ଅଭାବନୀୟ, ଅକଳ୍ପିତ ଶୂନ୍ୟମାର୍ଗରେ ତାକୁ ଉଡ଼ାଇ ନେଇ କୌଣସି ଦୂରବର୍ତ୍ତୀ ଉଚ୍ଚ ସୋପାନରେ ଚଳାଇ ଦେଉଅଛି । ଏହି ଅପର ଶକ୍ତିଟି ବାହ୍ୟଶକ୍ତି । ଏହା ଆନ୍ତରିକ ଶକ୍ତି ସଙ୍ଗେ ମିଶିବାରୁ ତାକୁ ବଳଶାଳୀ କରେ ସତ୍ୟ, ତାହାର ଧୀର ନିୟମାନୁଗତ ଗତିରେ କୁଠାରାଘାତ କରି ତାହାକୁ ଅନ୍ତିମ ଲକ୍ଷ୍ୟ ଆଡ଼କୁ ଦ୍ରୁତବେଗରେ ଘେନିଯାଏ ସତ୍ୟ, ମାତ୍ର ତାହାର ପ୍ରଭାବରେ ଏହା ମଧ୍ୟ ବିବିଧ ରୂପ ଧାରଣ କରିଥାଏ । ତଥାପି ଏ ଦୁଇ ଶକ୍ତିର ସମବାୟରେ ଯେଉଁ ଗୁରୁତର ଶକ୍ତିର ବିକାଶ ହୁଏ, ତାହା ବଳରେ ସମାଜ ଅବିରଳ ଉନ୍ନତି ପଥରେ ଧାବମାନ ହେଉଅଛି । ପୁଣି ଏ ଶକ୍ତିର କିଛିତ୍ ଆନ୍ତରିକ ଓ କିଛିତ୍ ବାହ୍ୟ ହେଲେ ସୁଦ୍ଧା ଏହାର ଫଳସ୍ୱରୂପ ଯେଉଁ ଉନ୍ନତି ବିକଶିତ ହୁଏ, ତାହା କେବଳ ମାତ୍ର ଆନ୍ତରିକ । ତଥାପି ଏହି ଆନ୍ତରିକ ଉନ୍ନତିର ପ୍ରମାଣ ସ୍ୱରୂପ ବାହ୍ୟ ଜଗତରେ ଅନେକ ନବୀନ ଆବିର୍ଭାବ ଦେଖାଯାଏ । ସାହିତ୍ୟ ତହିଁ ମଧ୍ୟରୁ ଗୋଟିଏ । ସମାଜର ଉନ୍ନତି ସଙ୍ଗେ ସଙ୍ଗେ ସାହିତ୍ୟର ମଧ୍ୟ ଉନ୍ନତି ହୁଏ । ତେବେ ସାହିତ୍ୟ ଯେ କେବଳ ସାମାଜିକ ଉନ୍ନତିର ବାହ୍ୟ ବିକାଶ ମାତ୍ର, ତାହା ନୁହେ । ସାହିତ୍ୟ ମଧ୍ୟ ସମାଜକୁ ଗଠନ କରେ । ବର୍ତ୍ତମାନ ସମାଜର ଚିତ୍ର ସାହିତ୍ୟରେ ଚିତ୍ରିତ ହୁଏ ଏବଂ ଏହି ଚିତ୍ରରୁ ସମାଜ ଭବିଷ୍ୟତର ଆଦର୍ଶ ପାଏ । ଅତଏବ ସମାଜ ଓ ସାହିତ୍ୟ ଦୁହେଁ ଦୁହିଙ୍କ ସଙ୍ଗେ ବନ୍ଧା । ସମାଜର ଉନ୍ନତି ଯେତେବେଳେ ଚରମ ଲକ୍ଷ୍ୟ, ସାହିତ୍ୟ ସେହି ଉନ୍ନତିର ନିଦର୍ଶନ ମାତ୍ର ନ ହୋଇ ଅବଲମ୍ବନ ମଧ୍ୟ ହୋଇଥାଏ ।

ବର୍ତ୍ତିମାନ ଦେଖିବାକୁ ହେବ, ସମାଜ କେଉଁ ଦଗରେ ଧାଇଁଅଛୁ । କବିଙ୍କ ଭାଷାରେ କହିଲେ One far off divine event to which the whole creation moves. ଦାର୍ଶନିକମାନଙ୍କ ମତ ନାନାପ୍ରକାର ହେଲେ ସୁଦ୍ଧା ଦର୍ଶନଶାସ୍ତ୍ର-ଅପଣ୍ଡିତ ସରଳ ମାନବ ମନରେ ଏହି ବିଶ୍ୱାସ ନିହିତ ଅଛି ଯେ ସୃଷ୍ଟିରେ ଗୋଟିଏ କିଛି ମହତ୍ ଉଦ୍ଦେଶ୍ୟ ବର୍ତ୍ତିମାନ । ସେହି ଉଦ୍ଦେଶ୍ୟ ଆଡ଼କୁ ସୃଷ୍ଟି ନିରନ୍ତର ପ୍ରଧାବିତ । ଆମ୍ଭମାନଙ୍କର ସମାଜ ମଧ୍ୟ ଏହି ସାଧାରଣ ଧାବନ ପ୍ରକ୍ରିୟାରେ ନିଜେ ନିମୁକ୍ତ । × × ×

ଶିଶୁଠାରୁ ବୃଦ୍ଧ ପର୍ଯ୍ୟନ୍ତ ପ୍ରତ୍ୟେକ ଆନ୍ଦୋଳକ ଅଭିଳାଷୀ ଉତ୍କଳବାସୀ ମଧୁସୂଦନଙ୍କ ବିଷୟରେ କିଛି ହେଲେ ଜାଣନ୍ତି । ଯେଉଁମାନେ ତାଙ୍କୁ "ବିହାର ଶଯ୍ୟାସନ କୋଇନେଷ୍ଟ" ଦେଖିଥିବେ, ସେମାନେ ତାଙ୍କର ମହତ୍ତ୍ୱ ଉତ୍ତମରୂପେ ଉପଲବ୍ଧି କରିଥିବେ । ଯେଉଁମାନେ ପୁଣି ସେ ପୁଣ୍ୟ ଅଧିକାରରୁ ମୋ ପରି ବଞ୍ଚିତ, ତାଙ୍କପାଇଁ ମୋହର କିଛି ଦେୟ ନାହିଁ । ସାମୟିକ ଦର୍ଶନରେ ଯାହା ମୋର ଅନ୍ଧ ଦୃଷ୍ଟିରେ ବେଳେ ବେଳେ ପଡ଼ିଥିଲା, ତାହାହିଁ ମୁଁ ପ୍ରାଣରେ ପୋଷି ଅଛି । ମଧୁସୂଦନଙ୍କ ଜୀବନଟି ବର୍ତ୍ତିମାନ ଯୁଗର ଉତ୍କଳବାସୀଙ୍କ ପକ୍ଷରେ ଗୋଟିଏ ଉନ୍ନତ ସମୁଜ୍ଜ୍ୱଳ ଆଦର୍ଶ । ମନୁଷ୍ୟ କଥାରୁ ଶିଖେନାହିଁ । କର୍ମ ସଂସାରରେ ସର୍ବଶ୍ରେଷ୍ଠ ଗୁରୁ । ମଧୁସୂଦନଙ୍କ ଜୀବନଟି ଆଦର୍ଶ କର୍ମମୟ ଜୀବନ । ଦୁଃଖୀ ପ୍ରତି ଦୟା, ପ୍ରାଣୀ ପ୍ରତି ସ୍ନେହ, ଅନୁରାଗିର ଅନୁରାଗ ପାଇଁ ପୂର୍ଣ୍ଣ ସମ୍ମାନରେ ତାଙ୍କ ପ୍ରାଣ ଗଢ଼ା ।

ଏକାନ୍ତ ଚରଣ ତଳେ ସୁଖେ ବସିବାର
କାହିଁଗଲା ମୋର ସେହି ପୁଣ୍ୟ ଅଧିକାର !

ଯାହାଙ୍କର ଚିନ୍ତା ଏପରି ଆକାର ଧାରଣ କରିପାରେ, ତାଙ୍କଠାରୁ ବଳି ପ୍ରେମିକ ଏ ଜଗତରେ ବିରଳ । ସେ ବାଲ୍ୟକାଳରୁ ବନ୍ଧୁତାର ଭକ୍ତ ଏବଂ ଏହି ଭକ୍ତିପାଇଁ ସେ ଯଥୋଚିତ ପୁରସ୍କାର ପାଇଥିଲେ । ତାଙ୍କର କେତେଜଣ ପ୍ରିୟତମ ବନ୍ଧୁ ଯୌବନର ନବପ୍ରଫୁଲ୍ଲତା ବେଳେ ବିଦାୟ ନେଇ ଯାଇଅଛନ୍ତି ସତ୍ୟ, ମଧୁସୂଦନ କିନ୍ତୁ ସେମାନଙ୍କୁ ହରାଇ ଅଧିକତର ସମ୍ପଦବାନ୍ । ତାଙ୍କର ସମୁଦାୟ ବନ୍ଧୁତା ପ୍ରେମର ବନ୍ଧନ । ମୋହ ତାଙ୍କ ପ୍ରାଣରେ ବିନ୍ଦୁମାତ୍ର ଆଶ୍ରୟ ପାଇ ନ ଥିଲା । ସେ ସର୍ବଦା ହୃଦୟରେ ଅନୁଭବ କରୁଥିଲେ—

ହିଜ ନାହିଁ ଯାର କେବେ କିଛି ହିଁ ରତନ,
ଏ ମର୍ତ୍ତ୍ୟ ସଂସାରେ ସେହି ଧନ ଅକାଞ୍ଚନ ।

ମାତ୍ର ସେ ବନ୍ଧୁଙ୍କ ହୃଦୟ ପାସୋର ପକାଇ ନ ଥିଲେ, କାରଣ ସେ ଜାଣିଥିଲେ ଯେ—

ସେ ପୁଣି ଦରିଦ୍ରତର ହୃଦୟ ରତନ,
ଏ ଭବଭବନେ ତାହା ପାସୋରେ ଯେ ଜନ ।

ବନ୍ଧୁଙ୍କ ହିତାକାଂକ୍ଷୀ ନୟନତେଜେ ରଖି ସେ ନିଜ ଜୀବନକୁ ଗଢ଼ିଥିଲେ । ବନ୍ଧୁଙ୍କ ସହିତ ତାଙ୍କର ଶାରୀରିକ ସମ୍ବନ୍ଧ ନ ଥିଲା ସତ୍ୟ, କିନ୍ତୁ ଅଜ୍ଞାତ, ଅନିର୍ବଚନୀୟ, ସ୍ୱପ୍ନାଶ୍ରିତରାଜ୍ୟଗତ ବନ୍ଧୁଙ୍କ ସଙ୍ଗେ ତାଙ୍କର ଅଚ୍ଛେଦ୍ୟ ବନ୍ଧନ ପୂର୍ଣ୍ୟ ସଂଯୋଗରେ ତାଙ୍କୁ ବାନ୍ଧି ରଖିଥିଲା ।

ଆଆନ୍ତା ଯେବେ ମୋର ବିହଙ୍ଗ ପକ୍ଷ
ଲଙ୍ଘି ଭୀଷଣ ଗିରି ସମୁଦ୍ର ବକ୍ଷ
ଦେଖନ୍ତି ପ୍ରିୟଜନ ମୁଖ କମଳ,
ହୁଅନ୍ତା ସନ୍ତାପିତ ପ୍ରାଣ ଶୀତଳ ।

ଏ କଥା ତାଙ୍କ ନିଜ ଜୀବନରେ ପ୍ରଯୁଜ୍ୟ ନୁହେ । ପୁଣି ସେ ପାପର ଭୟାବହ ଶତ୍ରୁ ଥିଲେ, କିନ୍ତୁ ପାପୀ ପ୍ରତି ତାଙ୍କର ସହାନୁଭୂତିର ସୀମା ନ ଥିଲା ।

କେ ରହିବ ରହୁଁ ତୋତେ ଗର୍ବ ଅବଜ୍ଞାରେ,
କିନ୍ତୁ ଲୋ ଭଗିନି, ମୁହିଁ ତୋ ଦୁଃଖେ କାତର ।

ଏହା ତାଙ୍କର କେବଳ ମୁଖର ଭାଷା ନୁହେ, ହୃଦୟର ଗଭୀର ଭାବ । ମଧୁସୂଦନଙ୍କର ବିଶ୍ୱାସର ସାହସ ଅସୀମ । ସେପରି ବିଶ୍ୱାସ ସାଧାରଣ ମାନବଠାରେ ଅସମ୍ଭବ ଏବଂ ସେପରି ସାହସ ମଧ୍ୟ ଅସୁନ୍ଦର ।

ମଧୁସୂଦନ ପ୍ରକୃତ ଦୂରଦର୍ଶୀ କବି । ସେ ସୌନ୍ଦର୍ଯ୍ୟର ପିପାସୁ ଉପାସକ ଥିଲେ । କବି ଓ ଦୂରଦର୍ଶୀ ମହାତ୍ମାମାନେ ଏକଶ୍ରେଣୀର ପ୍ରତିଭାଧର ପୁରୁଷ । ଉଭୟେ ରୂପ ମଧ୍ୟରେ ସ୍ୱର୍ଗୀୟ ବାସ୍ତବତା ନିରୀକ୍ଷଣ କରିପାରନ୍ତି । ସୃଷ୍ଟିର ଗୂଢ଼ ତତ୍ତ୍ୱ ଉଭୟଙ୍କ ଗୋଚର । ତେବେ ଦୂରଦର୍ଶୀ ମହାତ୍ମା ଯେତେବେଳେ ଜଗତର ନୈତିକ ଭାବରାଶିରେ ତନ୍ମୟ, କବି ତାହାର ସୌନ୍ଦର୍ଯ୍ୟରେ ନିମଜ୍ଜିତ । × × ×

ମଧୁସୂଦନ ସୃଷ୍ଟିର ସୌନ୍ଦର୍ଯ୍ୟ ଉପଲବ୍ଧି କରି ପାରିଥିଲେ । ସୁତରାଂ ସେ କବି । ସାଧାରଣ ଲୋକେ ବସ୍ତୁର ବାହ୍ୟ ଶୋଭା ମାତ୍ର ଦେଖନ୍ତି । ସେଥିଯୋଗୁଁ ଭଞ୍ଜ ରମଣୀର ସ୍ତନ ଜଘନ ବର୍ଣ୍ଣନା କରି ଗଲେ ଓ ଉତ୍କଳ ଆତ୍ମାକୁ ସେଥିଯୋଗରୁ କେବଳ ସେ ସକଳ ବର୍ଣ୍ଣନା ତୃପ୍ତି ଦିଏ । ସୌନ୍ଦର୍ଯ୍ୟର ଏ ଦିଗକୁ ମଧୁସୂଦନ ନିଜ ଜୀବନରେ ତଥା ତାଙ୍କର କତିପୟ କ୍ଷୁଦ୍ର ପଦ୍ୟରେ

ମଧ୍ୟ ପରିବର୍ତ୍ତିନ କରି ଦେଇଅଛନ୍ତି । ଅବଶ୍ୟ ତାଙ୍କ ଜୀବନର ଓ କବିତାର କୌଣସି ପ୍ରକାଶ୍ୟ ପ୍ରଭାବ ବର୍ତ୍ତମାନ ଉତ୍କଳ ଜୀବନରେ ପଡ଼ିନାହିଁ । ଏହାର କାରଣ ମହାତ୍ମାଙ୍କର ପରିଚୟ ଓ ପୂଜା ତାଙ୍କର ଜୀବିତାବସ୍ଥାରେ କ୍ୱଚିତ୍ ଦେଖା-ଯାଏ । ପୃଥିବୀର ପ୍ରାୟ ସମସ୍ତ ସଭ୍ୟ ଜାତି ଖ୍ରୀଷ୍ଟଙ୍କୁ ଆଜି ଦେବପୁତ୍ର ବୋଲି ପୂଜା କରୁଅଛନ୍ତି, ସେ ଦିନେ ପାପୀ ରୂପରେ ପ୍ରାଣଦଣ୍ଡ ପାଇଥିଲେ । ତଥାପି ମଧୁ-ସୂଦନ ସାର୍ବଜନୀନ ଭାବର ଯେଉଁ ବୀଜ ଉତ୍କଳରେ ବୁଣିଅଛନ୍ତି, ତାହା ନିଶ୍ଚୟ ଅଙ୍କୁରିତ ହେବ ।

"ଜାତୀୟ ସାହିତ୍ୟ ଜାତୀୟ ସଭ୍ୟତାର ପରିମାପକ ଅଟେ ।" ଉତ୍କଳର ସଭ୍ୟତା କି ଶ୍ରେଣୀର ଥିଲି, ତାହା ଉତ୍କଳର ଗତ ଶତାବ୍ଦୀର ଆଦର୍ଶ ସାହିତ୍ୟରୁ ସ୍ପଷ୍ଟ ଦେଖାଯାଏ । ସେ ସଭ୍ୟତା ମଧ୍ୟ ଉତ୍କଳର ଅଦ୍ୟାବଧି ବିଦ୍ୟମାନ ଶିଳ୍ପ ଓ ଚିତ୍ରରେ ପୂର୍ଣ୍ଣ ପ୍ରକାଶ ପାଏ । ସାହିତ୍ୟର ଏହି ଆକାରକୁ ପରିବର୍ତ୍ତିତ କରିବାପାଇଁ ରାଧାନାଥ ବହୁ ପ୍ରୟାସ କରିଥିଲେ । ମାତ୍ର କାହିଁକି କହିବା ଦୁଷ୍କର, ସେ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇପାରି ନ ଥିଲେ । ମଧୁସୂଦନ କିନ୍ତୁ ନିଜର ପ୍ରକୃତି ବଳରେ ଓ ବାହ୍ୟ ଶକ୍ତିପୁଞ୍ଜର ଆଂଶିକ ସହାୟତାରେ ସେ ପରିବର୍ତ୍ତିନ ଘଟାଇ ଦେଇ ଅଛନ୍ତି । ଯେଉଁ ସ୍ୱାଧୀନ ପ୍ରବୃତ୍ତି ଯୋଗୁଁ ସେ ଆପଣାର ସମାଜ, ତଥା ଧର୍ମ ଏକାବେଳକେ ବଦଳାଇ ଦେଲେ, ସେହି ଜୀବନ ନୀତି ତାଙ୍କ ଲେଖାମାନଙ୍କୁ ପରିଚାଳିତ କରିଅଛି ।

କବିତା ପ୍ରେମରେ ଆରମ୍ଭ । ପ୍ରେମଶୂନ୍ୟ ଆତ୍ମା କବି ହୋଇ ନ ପାରେ । ମଧୁସୂଦନ ପୂର୍ଣ୍ଣ ପ୍ରେମିକ ଥିଲେ । ସାଧାରଣ ଲୋକେ ଆପଣାର ପ୍ରେମକୁ ଜଣେ ଠାରେ ବା କୌଣସି ବିଶିଷ୍ଟ ବ୍ୟକ୍ତି ବା ବସ୍ତୁପୁଞ୍ଜଠାରେ ଆବଦ୍ଧ ରଖନ୍ତି । କେହି ବା ନିଜର ପ୍ରେମକଳ୍ପନାକୁ ନାୟକ ନାୟିକାର ପ୍ରଣୟରେ ପ୍ରକାଶ କରିଥା'ନ୍ତି । ମାତ୍ର ମଧୁସୂଦନ ବିଶ୍ୱପ୍ରେମିକ ଥିଲେ । ବିଶ୍ୱସଂସାରର ପ୍ରତ୍ୟେକ ବସ୍ତୁକୁ ସେ ସମାନ ଆଦର ଓ ସ୍ନେହ କରୁଥିଲେ । ଏଥିରେ ହିଁ ତାଙ୍କ କବିତାରେ ସାର୍ବ-ଜନୀନତା ନିହିତ । ଏଥିଯୋଗରୁ ସେ ପ୍ରତିନିଧି କବି ।

ମଧୁସୂଦନଙ୍କ ଜୀବନରେ ଆଉ ଏକ ବିଶେଷତ୍ୱ ଏହି ଯେ ତାଙ୍କର ଭାବ ଓ ଭାଷା ସମାନ । ତାଙ୍କ କବିତା ପଂକ୍ତିରେ ସେ ସ୍ନେହ, ସହାନୁଭୂତି, ଦୟା, କ୍ଷମା, ସୌଜନ୍ୟ, ମାନବତା, ସ୍ୱର୍ଗୀୟତାର ଚିତ୍ର ଦେଖାଇ ଅଛନ୍ତି । ଜୀବନରେ ମଧ୍ୟ ଏହି ସବୁ ଗୁଣ ଅଭ୍ୟାସ କରି ଯାଇଅଛନ୍ତି । ତାଙ୍କର ଜୀବନ କବିତାରେ ପ୍ରତିଫଳିତ ଓ କବିତା ଜୀବନରୁ ନିସୃତ । ଏହା ଉତ୍କଳରେ ନୂତନ ଓ ମହାଭାବର ଏକମାତ୍ର ବିକାଶ ତାଙ୍କଠାରେ ହୋଇଅଛି । ଉତ୍କଳର ଅଧିକାଂଶ କବି କୃତ୍ରିମ କବି ।

ଏମାନଙ୍କୁ ଇଂରାଜୀରେ Mechanical poets କୁହାଯାଇ ପାରେ । ବସ୍ତ୍ର-ବୟନ-ଅପଟୁ ଶ୍ରମଜୀବୀ ଯେପରି କଳକୁ ବୁଲାଇ ବୁଲାଇ ବସ୍ତ୍ର ଖଣ୍ଡିଏ ବାହାର କରିଦିଏ, ଏମାନେ ମଧ୍ୟ ସେହିପରି ପତ୍ର ଉପରେ ଲେଖନୀ ଚାଳନ କରି କରି ଗୋଟିଏ କବିତା ସୃଷ୍ଟି ଦିଅନ୍ତି । କବିଙ୍କ ଆତ୍ମା ଓ କବିତା ମଧ୍ୟରେ ସପ୍ତସାଗରର ପ୍ରଭେଦ । ଏହି ବିଶିଷ୍ଟତା ଯୋଗୁଁ ଏମାନେ ପ୍ରକୃତ କବି ପଦବାଚ୍ୟ ନୁହନ୍ତି । ଏମାନଙ୍କ କବିତାରେ କବିତାର ଗୂଢ଼ ଉଦ୍ଦେଶ୍ୟ ସାଧିତ ହୁଏନାହିଁ । କବିତା କେବଳ କ୍ଷଣିକ ଆମୋଦପ୍ରମୋଦ ନୁହେଁ । କବିତାର ବିଚକ୍ଷଣ ଶିକ୍ଷା ପ୍ରଦାୟିନୀ ଓ ଗଠନକାରିଣୀ ଶକ୍ତି ମଧ୍ୟ ଅଛି । ମାତ୍ର ଏମାନଙ୍କ ଜୀବନ କବିତାରୁ ପୃଥକ୍ ଥିବାରୁ ଏମାନଙ୍କ ଦ୍ୱାରା ସମାଜର କୌଣସି ଉନ୍ନତି ସାଧିତ ହୁଏନାହିଁ । ମାତ୍ର ମଧୁସୂଦନଙ୍କ ଜୀବନ ତାଙ୍କ କବିତାପଂକ୍ତିର ସମଷ୍ଟି ମାତ୍ର ଏବଂ ତାଙ୍କର ପ୍ରତ୍ୟେକ କବିତା ଜୀବନର ଗୋଟିଏ ଗୋଟିଏ ପୃଷ୍ଠା ।

ମଧୁସୂଦନ ଇହଜଗତର ଜନ, ସେ ମାନବ ସନ୍ତାନ । ମାତ୍ର, ତାଙ୍କ ଆତ୍ମା ଏହି କ୍ଷୁଦ୍ର ପୃଥିବୀର ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନ ଥିଲା । ସେ ଉନ୍ନତ ସ୍ୱର୍ଗ ରାଜ୍ୟକୁ ଉଠିଥିଲେ ଓ ସମସ୍ତ ମାନବ ଜାତିକୁ ଆପଣା ସଙ୍ଗରେ ଟାଣି ନେବାକୁ ପ୍ରାଣରେ ସର୍ବଦା ପ୍ରବଳ ପ୍ରେରଣା ଅନୁଭବ କରୁଥିଲେ । ସ୍ୱର୍ଗ ମର୍ତ୍ତ୍ୟକୁ ସେ ଏକ ମଣୁଥିଲେ ଏବଂ ସାଧାରଣ ମାନବକୁଳର ମଙ୍ଗଳପାଇଁ ମର୍ତ୍ତ୍ୟରୁ ସ୍ୱର୍ଗ ଦେଶକୁ ଗୋଟିଏ ସୋପାନ ବାନ୍ଧିବାର ଇଚ୍ଛା ହୃଦୟରେ ପୋଷଣ କରିଥିଲେ । ଜ୍ୟୋତିଷ ମଣ୍ଡଳୀର ସମ୍ପର୍କକୁ, ଦେବବର୍ଗର ମିଳନକୁ ସେ ସର୍ବଦା ମାନବ ପ୍ରତିଷ୍ଠାରେ ମଣି ଅଛନ୍ତି । "ଦ୍ୟାବା ପୃଥିବୀର କବା ଏ ଦୈବବିବାହ" ଏହାକୁ କେହି କେହି କବିତା ବିଭବରୁ ଅସୁନ୍ଦର ମଣି ପାରନ୍ତି । ମାତ୍ର ମାନବ ଚରିତ୍ର ଉପରେ ଏହାର ଯେ ଏକ ଅସୀମ ପ୍ରଭାବ ଅଛି, ସେ କଥା କେହି ଅସ୍ୱୀକାର କରିବେ ନାହିଁ । ଦେବତାମାନେ ପୁଣ୍ୟଶୀଳ ଏବଂ ମାନବ ଯେତେଦିନ ପର୍ଯ୍ୟନ୍ତ ଦେବତାମାନଙ୍କଠାରୁ ପୃଥକ୍ ବୋଲି ନିଜକୁ ମଣେ, ସେ ସେଥି ସଙ୍ଗେ ସଙ୍ଗେ ସ୍ୱୀକାର ଓ ଗ୍ରହଣ କରିନିଏ ଯେ, ତାହା ଜୀବନରେ ପୂର୍ଣ୍ଣ ପୁଣ୍ୟ ଅସମ୍ଭବ । ମାତ୍ର ଦେବତା ଓ ମାନବ ମଧ୍ୟରେ ପ୍ରଭେଦ-ରେଖା ଯେତିକି ନିଭିଯିବ, ମାନବ ସେତିକି ଦେବତା ହେବାକୁ ବସିବ ଏବଂ ସମସ୍ତଙ୍କର ଏହି କୁତ୍ସିତ ମର୍ତ୍ତ୍ୟଭୂମି ରମଣୀୟ ଓ ପୁଣ୍ୟମୟ ସ୍ୱର୍ଗରେ ପରିଣତ ହେବ ।

ସମାଜ ଏହି ଦିଗରେ ଗତି କରୁଅଛି । ପ୍ରାଥମିକ ପ୍ରାଚୀନ ଯୁଗର ପଶୁ ବର୍ତ୍ତମାନ ମାନବତା ପ୍ରାପ୍ତ ହେଲାଣି ଏବଂ କିଏ ଅସ୍ୱୀକାର କରିବ ଯେ ସଭ୍ୟତା ଓ ଉନ୍ନତିରେ ଯେଉଁ ଉଚ୍ଚ ଆଦର୍ଶ ବର୍ତ୍ତମାନ ନିସର୍ଗ-ସ୍ୱର୍ଗ ନିବାସୀ ଦେବତାମାନଙ୍କ ଠାରେ ନିହିତ ଅଛି, ଏହି କ୍ଷୁଦ୍ର ଧରାଧାମର ସାମାନ୍ୟ ମାନବ ଦିନେ ତାକୁ

ଆପଣାର ଜୀବନରେ ଉପଲବ୍ଧି କରିବ ? ସୃଷ୍ଟି ସୀମାରୁ ଅସୀମତା ଆଡ଼କୁ ଯାଉଅଛୁ ଏବଂ ଏହି ଗତିକୁ ସହାୟତା କରିବାକୁ କବିପ୍ରାଣରେ ଅସୀମ ଶକ୍ତି ନିହିତ ଅଛି । କବିର ଜୀବନ ସଙ୍କୀର୍ଣ୍ଣ ସୀମାବଦ୍ଧ ନୁହେ । ଅସୀମତାର ପୂଣ୍ୟ ଉପାଦାନରେ କବି ହୃଦୟ ଗଠିତ ।

ପ୍ରତିନିଧି ପୁରୁଷଙ୍କ ମହିମା ଗୋଟିଏ ଦୁଇଟି କଥାରେ ଶେଷ କରିବାର ନୁହେ । ଭାଷାରେ ତାଙ୍କର ଉଚ୍ଚତା ମାପି ହେବ ନାହିଁ । କବି କହିଛନ୍ତି, Heard melodies are sweet; but those unheard are sweeter. ଆମ୍ଭେମାନେ ନିରନ୍ତର ସଙ୍ଗୀତର ମଧୁର ତାନ ପ୍ରାଣରେ ଉପଭୋଗ କରୁଅଛୁ । ମାତ୍ର ସେଥିରେ ତ ଚିର ତୃପ୍ତି ମିଳେ ନାହିଁ । ପ୍ରାଣ ଯେପରି ସତେ ଅନ୍ୟ କିଛି ଲୋଡ଼େ । ସେ ସଙ୍ଗୀତ ଇହଜଗତରେ ନାହିଁ । କୋକିଳର କଳିତ ପଞ୍ଚମସ୍ୱରର ଲହରୀ ତାକୁ ପ୍ରକାଶ କରିବାକୁ ଅକ୍ଷମ, ସମୀରଣ ପରଶରେ ପଲ୍ଲବଦଳର ମଧୁର ରମଣୀୟ ସ୍ୱନ ତାହାର ଗ୍ରୁଣ୍ଡାଠାରୁ ଅଧମ । ସେ ଝୀଣ ସଙ୍ଗୀତ ବେଳେବେଳେ ମାନବର ହୃଦୟରେ ନିମେଷ ମାତ୍ର ଆନନ୍ଦଲହରୀ ଖେଳାଇ ଦେଇଯାଏ । ଏହି ଅଶ୍ରୁତ ସଙ୍ଗୀତ ମଧୁସୂଦନ ଅହର୍ନିଶି ଶୁଣୁଥିଲେ । ତାଙ୍କ ଜୀବନତନ୍ତ୍ରୀ ତହିଁରେ ଅହର୍ନିଶି ସ୍ପନ୍ଦିତ ହେଉଥିଲା । ତାଙ୍କ ହୃଦୟ ବିମଳ ଆନନ୍ଦରେ ନିରନ୍ତର ପରିପୂର୍ଣ୍ଣ ରହୁଥିଲା । ଏ ସଙ୍ଗୀତରେ ସେ ପ୍ରକୃତିର ମଧୁର ଗୀତ, ପ୍ରଭୁଙ୍କର ପୂଣ୍ୟ ଉପଦେଶ ଏବଂ ସମାଜର ପବିତ୍ର ଆଦର୍ଶ ଉପଲବ୍ଧି କରୁଥିଲେ ।

ମଧୁସୂଦନ ଉତ୍କଳର କେବଳ ସନ୍ତାନ ନୁହନ୍ତି, ସେବକ ନୁହନ୍ତି, କବି ନୁହନ୍ତି ବା ଧର୍ମପ୍ରଚାରକ ନୁହନ୍ତି । ସେ ଉତ୍କଳର ଜୀବନଦାତା । ମୃତ ଉତ୍କଳ ଦେଶକୁ ସେ ଜୀବଦାନ କରି ତାକୁ ଆପଣା ପଥରେ ଚଳାଇ ଦେଇଅଛନ୍ତି । ମହାତ୍ମାମାନେ ସର୍ବତ୍ର ଯେଉଁ କାର୍ଯ୍ୟ ସମ୍ପାଦନ କରିବାକୁ ଆବିର୍ଭୂତ ହୋଇଥାନ୍ତି, ମଧୁସୂଦନ ତାହାହିଁ ଜୀବନର ପ୍ରତ୍ୟେକ କର୍ମଠତାରେ କରି ଯାଇଅଛନ୍ତି । ଆମେରିକାର ଧର୍ମ ମହାସଭା, ଦେଶର ଆନ୍ତର୍ଜାତୀୟ ସମ୍ମିଳନ ବୃହତ୍ କ୍ଷେତ୍ରରେ ଯେଉଁ ଉଦ୍ଦେଶ୍ୟ ସାଧନ କରୁଅଛି, ମଧୁସୂଦନ ସଙ୍କୀର୍ଣ୍ଣ ଉତ୍କଳର କ୍ଷୁଦ୍ର ବୃତ୍ତି ମଧ୍ୟରେ ତାହାହିଁ କରିବାକୁ ପ୍ରୟାସ କରିଅଛନ୍ତି । ତାଙ୍କ ପୂର୍ବରୁ ଉତ୍କଳୀୟ ଆପଣାର ପରିଚୟ ପାଇ ନ ଥିଲା । ସେ ସାମାନ୍ୟ ପଶୁସ୍ୱରୂପ "ଆହାର ନିଦ୍ରା ଭୟ ମୈଥୁନ"ରେ ଦିନ ଯାପନ କରୁଥିଲା । ମଧୁସୂଦନ ତାକୁ ତା'ର ଆତ୍ମ ପରିଚୟ ଦେଇଅଛନ୍ତି ।

ଜଣାଥ ମାନବ ସନ୍ତାନେ ଉଚ୍ଚକୂଳ ତାହାର,
ସେ ଯେ ବ୍ରହ୍ମସୁତ ଏ ବାର୍ତ୍ତା କର ବଶେ ପ୍ରଚୁର ।

ଏହି ଜ୍ଞାନହିଁ ମନୁଷ୍ୟଙ୍କୁ ଉଚ୍ଚରୁ ଉଚ୍ଚତର ସୋପାନକୁ ଉଠାଇବା ପକ୍ଷରେ ପ୍ରଭୂତ । ଏ ଅତୁଳ ସମ୍ପଦ ଉତ୍କଳୀୟ ମଧୁସୂଦନଙ୍କଠାରୁ ପାଇଅଛୁ । ଉତ୍କଳୀୟ ଯୁବକ ଆଜ ମଧୁସୂଦନ ଭାବରେ ଅନୁପ୍ରାଣିତ; ଜଡ଼ତା, କୁଟିଳତା ତା'ର ଅତ୍ମାକୁ ଛୁଇଁବାକୁ ଅକ୍ଷମ ।

ହାୟ ! କନ୍ତୁ ସେ ମଧୁସୂଦନ ଆଜ ଉତ୍କଳରୁ ଚରକାଳ ନମନ୍ତେ ବଦାୟ ଘେନ ଯାଇଅଛନ୍ତ । ଉତ୍କଳ ପ୍ରତ କ ଅଭିଶାପ ! ସେ ତାହାର ପ୍ରାଣପ୍ରିୟ ପୁତ୍ରଟିକୁ ହରାଇ ବସିଅଛୁ । ଆଜ ଘରେ ଘରେ କନ୍ଦନର ରୋଳ, ପଥେ ପଥେ ଦୀର୍ଘଶ୍ୱାସର ଉଷ୍ଣ ସ୍ରୋତ । ଦରଦ୍ର ଭିଖାରୀ କହୁଅଛୁ—"ଆହା, ଅନ୍ନ ଏ ପେଟ କଏ ଚଳାଇବ ?" ପ୍ରେମିକ କାନ୍ଦୁଅଛୁ—ପ୍ରେମର ପସରା ସହସା ଭଙ୍ଗିଗଲା । ସନ୍ତାନ ସନ୍ତପ୍ତ ଶୋକରେ ଅଧୀର—ଗୃହର ଉଜ୍ଜ୍ୱଳ ପ୍ରଦୀପ ନଭିଗଲା ! ଆଉ କଏ ଆଲୋକ ଦେବ ? ଆହା, ତୁମ୍ଭର ସେ ମଧୁର ମୂର୍ତ୍ତି, ଶୁଭ ସରଳତା ଓ ଉଚ୍ଚ ମହତ୍ତ୍ୱର ସୁନ୍ଦର ସମ୍ମିଳନ ଦେଖିଲେ ମନେହୁଏ, ତୁମ୍ଭର ପବିତ୍ର ଋଷି ପ୍ରାଣରେ ଯେପରି ଦେବାବତରଣ ହୋଇଅଛୁ ।

ସେ ବହୁକାଳର କଥା, ମୋର ଶୈଶବ ବୟସରେ ଯେବେ ମୋହର ନାମକରଣ କର ଆସିଥିଲ, ସେ ଦନର ଦୃଶ୍ୟଟି ନୟନରେ ନାଚୁଅଛୁ । ଯେଉଁଦନ ସ୍ନେହରେ, ଆଦରରେ ପାଖରେ ବସାଇ ଖଣ୍ଡିଏ "ସଙ୍ଗୀତମାଳା" ଉପହାର ଦେଇଥିଲ, ସେ କଥା କାଲି ପର ଲାଗୁଅଛୁ । ସେ ପବିତ୍ର ମଧୁର ହାସ୍ୟ ବର୍ତ୍ତମାନ ଯେପର ଫୁଟି ଉଠୁଅଛୁ । ସେ କୋମଳ ଲଳିତ ବାଣୀ ଏହିକ୍ଷଣି ଯେପର ମୋର ଶ୍ରବଣକୁହରରେ ଧୀରେ ଧୀରେ ପ୍ରବେଶ କରୁଅଛୁ ।

ଆହା ଦେବ ! କେତେ ଦନରୁ ମନରେ ପାଞ୍ଚିଥିଲ, ଥରେ ପଦପ୍ରାନ୍ତରେ ବସି ତୁମ୍ଭ ଜୀବନର କାହାଣୀ, ପ୍ରାଣର ପ୍ରିୟ ଉପଦେଶ ବାଣୀ ଶୁଣିଥାନ୍ତ । ସେ ଆଶା ଦେବ ! ଅପୂର୍ଣ୍ଣ ରହିଗଲା ! ତୁମ୍ଭେ ଚାଲିଗଲ, ଇହଧାମ ତେଜି ଚରକାଳପାଇଁ ବାହାରଗଲ, ଥରେ ନେତ୍ର ତୃପ୍ତ କର, ପ୍ରାଣଭର ସେ ମଧୁର ପବିତ୍ର ମୂର୍ତ୍ତିଟି ନରୀକ୍ଷଣ କର ପାରଲ ନାହିଁ । ଏହା ମୋର କପାଳ ! ତେବେ ଦେବ ! ତୁମ୍ଭେ ଯେଉଁ ଆଦର୍ଶ ଦେଖାଇ ଯାଇଅଛ, ତାହା ତ ତୁମ୍ଭ ସଙ୍ଗରେ ଚାଲି ଯାଇ ନାହିଁ, ତୁମ୍ଭର ବେଲାଦେଶ, ତୁମ୍ଭର ଏକାମ୍ରକାନନ, ତୁମ୍ଭର ଖଣ୍ଡଗିରି, ତୁମ୍ଭର ହିମାଚଳ ଚରକାଳ ରହିବ । ତୁମ୍ଭେ ମେଲାଣି ଘେନଗଲ ସତ୍ୟ, ଏ ସବୁ ତୁମ୍ଭ ପ୍ରାଣର

ପ୍ରିୟତମ ପ୍ରତିମା ରହିଅଛନ୍ତି । ତୁମ୍ଭଙ୍କୁ ବନ୍ଦାସ୍ଥ ଦେଇ ତୁମ୍ଭର ଏହି ସବୁ ହୃଦସ୍ଥ ବେଦିରେ ଆରାଧନା କରିବ, ଏହାହିଁ ମାଗୁଣି । ଉତ୍କଳକୁ ଚଳନଶକ୍ତି ଦେବାପାଇଁ ଏତିକ ଯଥେଷ୍ଟ । ତୁମ୍ଭଙ୍କ ଆଜି ଉତ୍କଳ ହରାଇଅଛୁ, ମାତ୍ର ଏହି ଅପୂର୍ବ ଅବସ୍ଥାରେ ତୁମ୍ଭେ ପ୍ରାପ୍ତ, ମୃତ ହେଲେ ମଧ୍ୟ ଜୀବିତ । ତୁମ୍ଭର ଶକ୍ତି ଉତ୍କଳର ପବନରେ ଉଡ଼ୁଅଛୁ, ବୃକ୍ଷପଲ୍ଲବରେ ମର୍ମରୁଅଛୁ, କୋକିଳକଣ୍ଠରେ ତାନଲହରୀ ଉଠାଉଅଛୁ । ଯାଅ ମଧୁସୂଦନ, ତୁମ୍ଭର ନିଜ ହର୍ମ୍ୟରେ ଚିର ଶାନ୍ତିସୁଖ ଉପଭୋଗ କର ।

---

# ସ୍ୱର୍ଗତ ବାପୁ ମଧୁସୂଦନ ରାଓ ବାହାଦୁର

ଶ୍ରୀ ମଧୁସୂଦନ ଦାଶ
(କଟକ ନର୍ମାଲ ସ୍କୁଲର ଶିକ୍ଷକ)

୧୮୮୪ ମସିହାରେ ଛାତ୍ରବୃତ୍ତି ପରୀକ୍ଷା ଦେବା ନିମିତ୍ତ ପ୍ରସ୍ତୁତ ହେବାଲାଗି "ପ୍ରବନ୍ଧମାଳା" ଅଧ୍ୟୟନ କରୁଥିବା କାଳରେ ମୁଁ ଉକ୍ତ ପୁସ୍ତକର ପ୍ରଣେତା ଉଲ୍ଲିଖିତ ମହାତ୍ମାଙ୍କ ନାମମାତ୍ର ଜାଣିଥିଲି; କିନ୍ତୁ ୧୮୮୯ ମସିହାରେ ରେଭେନ୍‌ସା କଲେଜରେ ଏଫ୍. ଏ. ନ ପଢ଼ିବା ପର୍ଯ୍ୟନ୍ତ ମୁଁ ତାହାଙ୍କୁ ସ୍ୱଚକ୍ଷୁରେ ଦେଖି ନ ଥିଲି । ଯେଉଁଦିନ ଉକ୍ତ ମହାତ୍ମାଙ୍କୁ ମୁଁ ଚିହ୍ନିଲି, ତାହା ଏକ ବିଶେଷ ଦିବସ— ସେଦିନ ମାଘୋତ୍ସବ, ବ୍ରହ୍ମ ମନ୍ଦିରରେ ମଧୁବାବୁ ଉପାସନା କରୁଥିଲେ । ମୁଁ କତିପୟ ସଙ୍ଗୀମାନଙ୍କ ସହିତ ଉକ୍ତ ଉପାସନା ଦେଖିବାକୁ ଯାଇଥିଲି । ଯେତେବେଳେ ମଧୁବାବୁ ଈଶୋପନିଷଦ୍‌ରୁ "ଈଶାବାସ୍ୟମିଦଂ ସର୍ବଂ" ଇତ୍ୟାଦିର ଆବୃତ୍ତି କରୁଥିଲେ, ତେତେବେଳେ ମୋ ମନରେ ଏହି ଧାରଣା ହୋଇଥିଲା, ସତେ କି ତାହା କୌଣସି ବୈଦିକ ଋଷିମୁଖରୁ ବିନିସୃତ ହେଉଅଛି । ସମୁଦାୟ ବ୍ରହ୍ମମନ୍ଦିରଟି ନିନାଦିତ ହୋଇ ଯାଉଥିଲା ଏବଂ ଯେ ତାହା ଶୁଣିଥିଲା, ତାହାର ମନରେ ବକ୍ତାଙ୍କ ପ୍ରତି ନିସର୍ଗମଧୁର ଭକ୍ତି ଜାତ ହେଉଥିଲା । ଅନ୍ତତଃ ସେହିଦିନ-ଠାରୁ ତାହାଙ୍କ ପ୍ରତି ମୋର ଯେଉଁ ଭକ୍ତି ଓ ଶ୍ରଦ୍ଧା ଜାତ ହୋଇଥିଲା, ତାହା ଆଜି ପର୍ଯ୍ୟନ୍ତ ଜାଗରୂକ ଅଛି ଏବଂ ମୁଁ ତାହା ଆଜୀବନ ଭୁଲିବି ନାହିଁ ।

ତତ୍ପରବର୍ତ୍ତୀ ସୁଦୀର୍ଘ ବର୍ଷ ମଧ୍ୟରେ ମୋର ଭକ୍ତିଭାଜନ ଗୁରୁଦେବ ଶ୍ରୀଯୁକ୍ତ ବିନୟଚନ୍ଦ୍ର ମଜୁମଦାର ମହାଶୟଙ୍କ କୃପାରୁ ମୁଁ ତାହାଙ୍କ ସହିତ ପରିଚୟ ଲାଭ କରିଥିଲି ଏବଂ ମୁଁ ମୋର ପାଠଦଶାରେ ତାହାଙ୍କର ଅଧିକାଂଶ ସାଧାରଣ ବକ୍ତୃତା ମନୋଯୋଗସହକାରେ ଶୁଣିଅଛି ଏବଂ ଏହି ପ୍ରତ୍ୟେକ ବକ୍ତୃତାରେ ତାହାଙ୍କର ଗଭୀର ଐଶ୍ୱରିକ ପ୍ରେମ ଓ ଭକ୍ତିର ପରିଚୟ ପାଇଅଛି ।

୧୮୯୬ ମସିହାର ଅଗଷ୍ଟ ମାସରେ ମୁଁ କଟକ ନର୍ମାଲ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହେଲି ଏବଂ ସେହି ଦିନଠାରୁ ମୋର ଉକ୍ତ ମହାତ୍ମାଙ୍କ ସହିତ ଘନିଷ୍ଠ ପ୍ରଣୟ ଜାତ ହେଲା । ଉକ୍ତ ମହାଶୟ ତେତେବେଳେ ନର୍ମାଲ ବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ଥିଲେ । ଅଧଃସ୍ଥ ଶିକ୍ଷକ ସହିତ ପ୍ରଧାନ ଶିକ୍ଷକଙ୍କର ସମ୍ପର୍କ କିପରି ରହିଲେ ବିଦ୍ୟାଳୟର ଅଧ୍ୟାପନା କାର୍ଯ୍ୟ ସୁଚାରୁରୂପେ ନିର୍ବାହିତ ହୁଏ ଏବଂ ଅଧଃସ୍ଥ କର୍ମଚାରୀ କର୍ତ୍ତବ୍ୟନିଷ୍ଠ ନ ହୋଇ ରହିପାରେ ନାହିଁ, ଏହା ମୁଁ ଉକ୍ତ ମହାତ୍ମାଙ୍କଠାରୁ ସେହିଦିନୁଁ କ୍ରମେ କ୍ରମେ ଶିଖିଅଛି । ଉକ୍ତ ବିଦ୍ୟାଳୟର ଅଧ୍ୟାପନା କାର୍ଯ୍ୟରେ ଉପଯୁକ୍ତ ସମ୍ମାନ ସହି ତାହାଙ୍କ ମତାବଳୀକୁ ଅନେକ ସ୍ଥଳରେ ଅନୁସରଣ କରି ସୁଦ୍ଧା ମୁଁ ଦିନେ ହେଲେ ତାହାଙ୍କର ବିରାଗଭାଜନ ହୋଇନାହିଁ । ଅଧ୍ୟାପନା କାର୍ଯ୍ୟରେ ସୁଖ ଦୁଃଖଠାରୁ ଆରମ୍ଭ କରି ପାରିବାରିକ ଓ ସାମାଜିକ ସୁଖ ଦୁଃଖ ବିଷୟକ ପ୍ରସଙ୍ଗ ପର୍ଯ୍ୟନ୍ତ ଯେତେବେଳେ ଯେଉଁ ବିଷୟରେ ମୁଁ ଉପଦେଶ ଲୋଡ଼ିଅଛି, ତେତେବେଳେ ତାହା ଅକୁଣ୍ଠିତ ଓ ଅକପଟ ଭାବରେ ତାହାଙ୍କଠାରୁ ଲାଭ କରିଅଛି ଏବଂ ଅଧିକାଂଶ ସାଧାରଣ କାର୍ଯ୍ୟରେ ସେ ମୋର ଶିକ୍ଷାଗୁରୁ ହୋଇଅଛନ୍ତି ।

ସହକାରୀ ଶିକ୍ଷକ, ଛାତ୍ର ଏବଂ ସାଧାରଣ ଜନମାନଙ୍କ ପ୍ରତି ତାହାଙ୍କର ସହାନୁଭୂତି ଦେଖିଲେ ବିସ୍ମୟାନ୍ୱିତ ହେବାକୁ ହୁଏ ଏବଂ ସେ କାହାରିକୁ ଯଥାସାଧ୍ୟ ସାହାଯ୍ୟ ନ କରି ରହି ପାରନ୍ତି ନାହିଁ । ଛାତ୍ରମାନେ ତାହାଙ୍କୁ ପିତା ତୁଲ୍ୟ ସ୍ନେହ ଓ ଭକ୍ତି କରୁଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକେ ତାହାଙ୍କଦ୍ୱାରା ଧର୍ମ-ଜୀବନରେ ଅନୁପ୍ରାଣିତ ହୋଇଅଛନ୍ତି । ତାହାଙ୍କର ଅସଂଖ୍ୟ ଛାତ୍ର ମଧ୍ୟରୁ କେହି ଜଣେ ହେଲେ ଦିନେ ସୁଦ୍ଧା ତାଙ୍କ ପ୍ରତି ଅଭକ୍ତି ବା ଅସମ୍ମାନ ପ୍ରକାଶ କରିଥିବାର ମୁଁ ଶୁଣି ନାହିଁ, ଏପରି କି କେହି ଦିନେ ତାହାଙ୍କର ସ୍ନେହକଷାୟିତ ନୟନ ଓ ତୀବ୍ର ଭର୍ତ୍ସନାରେ କ୍ଷୁବ୍ଧ ହୋଇ ତାହାଙ୍କ ପ୍ରତି ବୀତଶ୍ରଦ୍ଧ ହୋଇଥିବାର ବା ଅଭକ୍ତି ପ୍ରଦର୍ଶନ କରିଥିବାର ଦେଖା ନାହିଁ । ଛାତ୍ରର ଦୋଷ ଦେଖିଲେ ସେ ଯେପରି ପିତୃତୁଲ୍ୟ ଭର୍ତ୍ସନା କରନ୍ତି, ସେହିପରି ଆଶ୍ୱାସବାଣୀ ପ୍ରୟୋଗ କରି ତାହାର ଦୁଃଖ ଅପନୋଦନ କରନ୍ତି । ଛାତ୍ରର ସାମାନ୍ୟ ଗୁଣ ଦେଖିଲେ ସେ ଆନ୍ତରିକ ଆନନ୍ଦ ପ୍ରକାଶ ନ କରି ରହି ପାରନ୍ତି ନାହିଁ । ହଜାର ଦୋଷ ମଧ୍ୟରେ

କାହାର କଣିକାଏ ଗୁଣ ଥିଲେ ସେ ତାହାକୁ ଖୋଜି ବାହାର କରନ୍ତି । ସେ ଛାତ୍ରମାନଙ୍କ ପ୍ରତି ଯେପରି "ଅଧୃଷ୍ୟ" ସେହିପରି "ଅଧିଗମ୍ୟ" ଥିଲେ । କେବଳ ଛାତ୍ରମାନଙ୍କର ନୁହେ, ସହକାରୀ ଶିକ୍ଷକ ତଥା ସାଧାରଣ ଜନସମାଜର ସେ "ଅଧୃଷ୍ୟ" ଅଥଚ "ଅଧିଗମ୍ୟ" ।

ସେ ସମୟର ଦିନ ଦିନକର କଥା ମନେପଡ଼ିଲେ ଆଜି ହୃଦୟ ନିତାନ୍ତ ବ୍ୟଥିତ ହେଉଅଛି । ତତ୍କାଳରେ ମୁଁ ପୀଡ଼ିତ ହେଉଥିଲେ ମୋତେ ଦେଖି ସନ୍ତୋଷ ଦିବାକୁ ସେ ଦିନେ ସୁଦ୍ଧା ଭୁଲି ନାହାନ୍ତି ଏବଂ ଦେହରେ ହାତ ବୁଲାଇ ସାନ୍ତ୍ୱନା ଦେବାକୁ ସଙ୍କୁଚିତ କରି ନାହାନ୍ତି । ପ୍ରକୃତରେ ତାଙ୍କ ସଂସ୍ପର୍ଶରେ ଯାତନାର ବିଶେଷ ଲାଘବ ଘଟୁଥିଲା । ସ୍ୱୟଂ ଯେତେବେଳେ ପୀଡ଼ିତ ହେଉଥିଲେ, ସେତେବେଳେ ସେ ମୋତେ ଦିନେ ନ ଦେଖିଲେ ଡାକି ପଠାନ୍ତି ଏବଂ ଚବିଶ ଘଣ୍ଟା ମଧ୍ୟରେ ଯେତେବେଳେ ଯାହା ଘଟିଥାଏ ତାହା ବ୍ୟକ୍ତ କରନ୍ତି । ଥରେ ସେ ବାତଜ୍ୱରରେ ପୀଡ଼ିତ ଥିଲାବେଳେ ମୋତେ କହିଥିଲେ, "ମୁଁ ତୁମ୍ଭକୁ ଦେଖିଲେ ମନେ କରେ ମୋର ପୀଡ଼ା କମିଗଲା ।" ମୁଁ କହିଲି, "ଆପଣ ମୋତେ ବଡ଼ ଭଲ ପାଆନ୍ତି, ତାହାହିଁ ଏଥିର କାରଣ ।" ସେ ଉତ୍ତର ଦେଲେ, "ସ୍ୱଭାବତଃ ମୁଁ ତୁମ୍ଭ ପ୍ରତି ବଡ଼ ଆକୃଷ୍ଟ, କାରଣ କ'ଣ ଜାଣେ ନାହିଁ, ତୁମ୍ଭେ ତ ବ୍ରାହ୍ମଣ, ମୁଁ ବ୍ରାହ୍ମ, ତୁମ୍ଭେ ଯୁବକ, ମୁଁ ବୃଦ୍ଧ, ଏହା କେବଳ ହୃଦୟର ଆକର୍ଷଣ ।"

ତାହାଙ୍କ ସହିତ ସାଧାରଣ କଥୋପକଥନରେ ଗୋଟିଏ ଦୁଇଟି ଈଶ୍ୱରପ୍ରେମ ବିଷୟକ କଥା ଅବଶ୍ୟ ଶୁଣିବାକୁ ମିଳେ ଏବଂ ସେହି ପରମ-କାରୁଣିକ ପରମେଶ୍ୱର ଯାହା ପ୍ରତି ଯାହା କରନ୍ତି, ତାହା ଜଗତର ମଙ୍ଗଳ ନିମିତ୍ତ, ଏହି ଭାବ ସର୍ବଦା ତାହାଙ୍କ ହୃଦୟରେ ଜାଗରୂକ ଥିଲା ପରି ବୋଧହୁଏ ।

ଦିନେ ମୁଁ ଗୋଟିଏ ଶ୍ରେଣୀରେ ପଢ଼ାଉଥିଲି, ଛାତ୍ରମାନେ କିଛିଏ ଉଚ୍ଚ ସ୍ୱରରେ ଗୋଳମାଳ କଲେ, ତହିଁ ସେ ଉକ୍ତ ଶ୍ରେଣୀକୁ ଆସି ବିରକ୍ତିଭାବ ପ୍ରକାଶ କରି ମୋତେ କହିଲେ, "ତୁମ୍ଭେ ବଡ଼ ମୃଦୁ ।" ଅଧ୍ୟାପନା ଶେଷରେ ମୋତେ ଡାକି କହିଲେ, "ଶ୍ରେଣୀ ମଧ୍ୟରେ ସେପରି କହିବାଦ୍ୱାରା ତୁମ୍ଭେ ମୋ ପ୍ରତି ଅସନ୍ତୁଷ୍ଟ ହେଲ ପରା ? ବାହ୍ୟକୋପ ପ୍ରଦର୍ଶନ ଏବଂ ଆଭ୍ୟନ୍ତରୀଣ ଦୟା ଏ ଦୁହେଁ ଶିକ୍ଷକର ପ୍ରଧାନ ସହାୟ, କିନ୍ତୁ ମୋ ପରି ହଠାତ୍ ରାଗିବା ଶୋଭନୀୟ ନୁହେଁ ।" ତାହାଙ୍କର ମହାନୁଭବ ସ୍ୱଭାବ କିପରି ଥିଲା, ତାହା ଏଥିରୁ ସହଜରେ ପ୍ରତିପନ୍ନ ହେବ । ତାହାଙ୍କର ବିନୟ ଓ ସୌଜନ୍ୟ ଏବଂ ଚରିତ୍ରର ମଧୁରତା ତାହାଙ୍କ କ୍ଷଣକୋପକୁ ମୃଦୁଭାବାପନ୍ନ କରି ଦେଉଥିଲା । ସେ ଯେତେ ରାଗିଲେ ସୁଦ୍ଧା ସେହି ରାଗ ତାଙ୍କ ମନରେ ୧୦।୧୫ ମିନିଟ୍‌ରୁ ଅଧିକକାଳ ପ୍ରଭାବ ବିସ୍ତାର କରି ପାରୁ ନ

ଥିଲା । ସେ ବିନୟର ଅବତାର ଥିଲେ ଏବଂ ତାହାଙ୍କ ବିନୟ ଓ ସୌଜନ୍ୟ ଦେଖି କେହି ତାହାଙ୍କ ଉପରେ ଦୀର୍ଘକାଳ ରାଗକରି ରହି ପାରୁ ନଥିଲେ ।

କଟକ ନର୍ମାଲ ସ୍କୁଲରେ ସ୍ଥାପିତ ଆଲୋଚନା ସଭାଠାରୁ ଆରମ୍ଭ କରି ଉତ୍କଳ ସାହିତ୍ୟ ସମାଜର ସ୍ଥାପନ ପର୍ଯ୍ୟନ୍ତ ତାହାଙ୍କର ସର୍ବପ୍ରକାର ସାହିତ୍ୟ ଚର୍ଚ୍ଚାବିଷୟକ ସାଧାରଣ ଉଦ୍ୟମରେ ମୁଁ ତାହାଙ୍କର ଅନୁଗତ ହୋଇ ଲକ୍ଷ୍ୟ କରିଅଛି ଯେ ଉତ୍କଳ ସାହିତ୍ୟର ଦୀନାବସ୍ଥା ଦେଖି ତାହାଙ୍କର ପ୍ରାଣ ସତତ କାନ୍ଦୁଥିଲା । କିପରି ଏହି ଦୀନହୀନ ସାହିତ୍ୟ ଉଚ୍ଚ ଆଦର୍ଶରେ ଗଠିତ ହେବ, ଏହାହିଁ ତାହାଙ୍କର ଆନ୍ତରିକ କାମନା ଥିଲା । ଅବସର ପାଇଲେ ସେ ଗୋଟିଏ ଦିଓଟି କବିତା ନ ଲେଖି ରହି ପାରୁ ନ ଥିଲେ । ଏଣେ ପେଟକୁ ମାରୁଥାଏ, ତେଣେ କବିତା ଲେଖା ଯାଉଥାଏ କିମ୍ବା କୌଣସି ବକ୍ତୃତା ଦେବା କି ଆତ୍ମୋନ୍ନତି ସାଧନ କରିବା ଉଦ୍ଦେଶ୍ୟରେ ପୁସ୍ତକାଦିର ପାଠ ହେଉଥାଏ, ଏହା ମୁଁ ସତତ ଦେଖିଅଛି । ଥରେ ଘୋର ଯାତନା କାଳରେ ନିଷେଧ କରିବାରୁ ମୁଁ ଉତ୍ତର ପାଇଥିଲି, "ଲେଖାରେ କି ପଢ଼ାରେ ମନଟା ଲାଗିଗଲେ ଯାତନାଟା ଟିକିଏ ଊଣା ହେଲାପରି ଜଣାପଡ଼େ, ପେଟ କୁଟୁକୁଟୁ ହୋଇ କାଟୁଛି, ମୁଁ କୁଟୁକୁଟୁ ହୋଇ ଲାଗିଛି, ଦେଖାଯାଉ କାହାର କେତେ ବଳ ?"

ତାହାଙ୍କର ଦୃଢ଼ ଧାରଣା ଥିଲା ଯେ ସର୍ବପ୍ରକାର ରୋଗ ସ୍ୱକୃତ ପାପର ଦଣ୍ଡ । ପ୍ରାକୃତିକ ନିୟମର ଲଙ୍ଘନ ଏକ ମହାପାପ । ଆଇନର ଅନଭିଜ୍ଞତାବଶତଃ କେହି ଯେପରି ସ୍ୱକୃତ ଅପରାଧଜନିତ ଦଣ୍ଡରୁ ମୁକ୍ତ ଲଭି ପାରିବ ନାହିଁ । ଦଣ୍ଡଭୋଗ କାଳରେ ଯେଉଁ ଅନୁତାପ ହୁଏ, ତାହା ଆତ୍ମାକୁ ପବିତ୍ର କରେ । ଆତ୍ମା ପବିତ୍ର ହେଲେ ଈଶ୍ୱରାନୁଭୂତି ଜନ୍ମେ । ପରମକାରୁଣିକ ଈଶ୍ୱର ଦୟା କରି ରୋଗ ରୂପ ଦଣ୍ଡର ସୃଷ୍ଟି କରିଅଛନ୍ତି । ରୋଗର ଯାତନା ଭୋଗିବା ଲାଗି ପାପୀ ମନୁଷ୍ୟର ପ୍ରସ୍ତୁତ ରହିବା ଉଚିତ ଏବଂ କେଉଁ ନିୟମର ଲଙ୍ଘନରୁ ରୋଗ ଜାତହେଲା, ତାହା ଜାଣି ନିୟମଭଙ୍ଗ ଲାଗି ଅନୁତପ୍ତ ହେବା ବାଞ୍ଛନୀୟ । ଏଥିରେ ମୁଁ ତାଙ୍କ ସହିତ ଯୁକ୍ତି କରୁ କରୁ ଏହିପରି ଉତ୍ତର ପାଇଥିଲି । କି ଅସାଧାରଣ ବୋଧଶକ୍ତି ।

ସରକାରୀ ଚାକିରିରେ ଥିବାରୁ ସେ କୌଣସି ରାଜନୈତିକ ଆଲୋଚନାରେ ଯୋଗ ଦେଉ ନ ଥିଲେ । ଉତ୍କଳ ସମ୍ମିଳନୀ ଯେତେବେଳେ ସ୍ଥାପିତ ହେଲା ଏବଂ ନିର୍ଦ୍ଧାରିତ ହେଲା ଯେ ରାଜନୈତିକ ଓ ଧର୍ମସମ୍ବନ୍ଧୀୟ ପ୍ରସଙ୍ଗ ଭିନ୍ନ ସର୍ବପ୍ରକାର ଦେଶହିତକର ବିଷୟ ତହିଁରେ ଆଲୋଚିତ ହେବ, ତେତେବେଳେ ଉକ୍ତ ସମ୍ମିଳନୀ ପ୍ରତି ତାଙ୍କର ଯେଉଁ ପ୍ରୀତି ଓ ଶ୍ରଦ୍ଧା ପ୍ରଦର୍ଶିତ ହୋଇଥିଲା, ତାହା ସେ ସମୟରେ ଯେ ତାଙ୍କ ସହିତ ସେ ବିଷୟରେ କଥୋପକଥନ କରିଅଛି, ସେ ଜାଣେ ।

ତେତେବେଳେ ସେ ମୋତେ ଅନେକ ଥର ଏହିପରି କହିଅଛନ୍ତି :—"ଏହି ଯେ ନବଜାଗରଣର ସୂତ୍ରପାତ ହୋଇଅଛି, ତହିଁରେ ଉତ୍କଳ ପ୍ରବୁଦ୍ଧ ହେଲେ ତାହାର ଉନ୍ନତି ଅବଶ୍ୟମ୍ଭାବୀ । ଏହାର ଦ୍ୱାରା ଉତ୍କଳ ସାହିତ୍ୟର ଆକାଶ ବିମଳ ହୋଇ ଉଠିବ । ଈଶ୍ୱର ଏହି ସଚ୍ଚେଷ୍ଟା ଉପରେ ଆଶୀର୍ବାଦ ବର୍ଷଣ କରନ୍ତୁ ।" ଈଶ୍ୱର-ପ୍ରେମିକ ଅଶାସ୍ତିର ଆଶା ବିଫଳ ହେବାର ନୁହେ, ତେଣୁ ମନେହୁଏ, ଉତ୍କଳ ସମ୍ମିଳନୀର ସୁଦୂର ଭବିଷ୍ୟତ ଅତ୍ୟନ୍ତ ଅନୁକୂଳ ନୁହେ ।

୧୯୦୫ ମସିହାରେ ମୁଁ କଟକ ଛାଡ଼ି ପୁରୀଠାକୁ ଗଲି । ସେହିଦିନୁ ତାହାଙ୍କ ସହିତ ମୋର ଅନେକ ଥର ସାକ୍ଷାତ୍ ହେବାର ସୁଯୋଗ ନ ଥିଲା, ତଥାପି ଯେତେବେଳେ ମୁଁ ତାଙ୍କ ସଙ୍ଗେ ଯେତେ ଥର ସାକ୍ଷାତ୍ କରିଅଛି, ତାହାଙ୍କର ମଧୁମୟ ପ୍ରେମରେ ମୁଗ୍ଧ ହୋଇ ଯାଇଅଛି । ସେହି ଅକପଟ ପୁଣ୍ୟମୟ ପ୍ରେମ ଏ ସଂସାରରେ ଦୁର୍ଲଭ । ତାହାଙ୍କର ସରକାରୀ ଚାକିରୀ ଛାଡ଼ିବାର ଶେଷ ଦିନ ପୁରୀରେ ଅତିବାହିତ ହୋଇଥିଲା ଏବଂ ତଦୁପଲକ୍ଷେ ମାର୍କଣ୍ଡେଶ୍ୱର ସାହି ନିବାସୀ ଜମିଦାର ମିଠୁ ମିଶ୍ର ମହାଶୟ ତାହାଙ୍କୁ କତିପୟ ବନ୍ଧୁବାନ୍ଧବଙ୍କ ସହିତ ମହାପ୍ରସାଦ ସେବା କରାଇବାର ଆୟୋଜନ କରିଥିଲେ । ସେହିଦିନ ତାହାଙ୍କ ସକରୁଣ ପ୍ରେମବିଦାୟ ବାଣୀରେ ଆମ୍ଭେମାନେ ସମସ୍ତେ ଶୋକବିହ୍ୱଳ ହୋଇ ଯାଇଥିଲୁଁ ଏବଂ ଯେତେ-ବେଳେ ସେ ସମବେତ ବନ୍ଧୁଗଣ ଏବଂ ବ୍ରାହ୍ମଣ ପଣ୍ଡିତମଣ୍ଡଳୀଙ୍କୁ ନମସ୍କାର କରି ସଜଳ ନୟନରେ ଆସନ ଗ୍ରହଣ କରିଥିଲେ, ତେତେବେଳେ ତାହାଙ୍କ ବିନୟ ନମ୍ର ମୁଖଶ୍ରୀ ଅଦ୍ୟାବଧି ମୋର ହୃଦୟ ପଟରେ ଦୃଢ଼ଭାବରେ ଅଙ୍କିତ ଅଛି ଏବଂ ବୋଧହୁଏ ଚିରକାଳ ରହିବ । ଜଣେ ବ୍ରାହ୍ମର ବିଭୁପ୍ରସାଦ ବୋଲି ମହାପ୍ରସାଦ ପ୍ରତି ଏଡ଼େ ଭକ୍ତ ହୋଇପାରେ, ଏହା ମଧ୍ୟ ଆଶାର ଅତୀତ ।

ଏହି କଟକକୁ ଫେରି ଆସିବା ପରେ ବିଗତ ଦେଢ଼ ବର୍ଷ ମଧ୍ୟରେ ମୋର ତାଙ୍କ ସହିତ ଅନେକ ଥର ସାକ୍ଷାତ୍ ହୋଇଅଛି ଏବଂ ଯେତେଥର କଥୋପକଥନ ହୋଇଅଛି, ତେତେଥର କଟକ ଟାଉନ ଭିକ୍ଟୋରିଆ ହାଇ ଇଂଲିଶ ସ୍କୁଲ ବା ଉତ୍କଳ ସାହିତ୍ୟ ସମାଜର ଉନ୍ନତିବିଷୟକ ପ୍ରସଙ୍ଗରେ ଅଥବା କୌଣସି ଓଡ଼ିଆ ବା ବଙ୍ଗଳା ପୁସ୍ତକର କିମ୍ବା ସଦ୍ୟପ୍ରଣୀତ କୌଣସି କବିତାର ଆଲୋଚନାରେ କାଳ ଅତିବାହିତ ହୋଇଅଛି । ଶେଷଥର ସାକ୍ଷାତ୍ ସମୟରେ ସେ ମୋତେ କହିଥିଲେ, "ଆଗାମୀ ଶ୍ରୀପଞ୍ଚମୀ ଦିନ ଗୋଟିଏ ସାହିତ୍ୟ ସମ୍ମିଳନୀ କରିବା ।" କିନ୍ତୁ ଶ୍ରୀପଞ୍ଚମୀ ଆସୁଛି ମଧୁ ବାବୁ ଅମରଲୋକରେ । ସେହି ଅମରଲୋକରେ ଶ୍ରୀପଞ୍ଚମୀ ଦିନ ସାହିତ୍ୟ ସମ୍ମିଳନୀ ହେବ, ଆମ୍ଭେମାନେ କ'ଣ ତହିଁରେ ଯୋଗ ଦେଇ ପାରିବା ?

ଅଳ୍ପଦିନ ପୂର୍ବେ ଥରେ ଯେତେବେଳେ ସେ ରୋଗଶଯ୍ୟାରେ ଶାୟିତ ଥିଲେ, ତେତେବେଳେ ମୁଁ ଦିନେ ରାତିରେ ତାଙ୍କୁ ସଙ୍ଘୋଳିବାକୁ ଯାଇଥିଲି । ବିଛଣା ପାଖରେ ବସିବାକୁ କହିବାରୁ ମୁଁ ବସିଲି । କହିଲେ, "ମୋତେ ତୁମ୍ଭର ହାତ ଦିଓଟି ଦିଅ ।" ମୋର ହାତ ଦିଓଟି ନେଇ ନିଜ ପେଟ ଉପରେ ଏବଂ ମୁଣ୍ଡରେ ରଖିଦେଲେ । ମୁଁ କିଛି କ୍ଷଣ ହାତ ବୁଲାଇବା ପରେ ନିଜର ଦୁଇ ହାତ ମଧ୍ୟରେ ମୋର ହାତ ଦିଓଟି ରଖି କହିଲେ, "ବଡ଼ ଆରାମ ଲାଗିଲା ।" ମୁଁ ପଚାରିଲି, "ଆଜି କିଣ ଟିକିଏ ଭଲ ଲାଗୁଛି ?" "ହଁ ଟିକିଏ ଭଲ ଅଛି" ବୋଲି କହି ଅଶ୍ରୁବିମୋଚନ କଲେ । ତଦନନ୍ତର କହିଥିଲେ, "ଅତି ଅଳ୍ପ ବୟସରୁ ମୁଁ ରୁଗ୍ଣ, ଏହି ରୁଗ୍ଣ ଶରୀର ଘେନି ମୁଁ ଏଠାରେ କିଣ କରିବି ? କି ଈଶ୍ୱର ସେବା କି ସାହିତ୍ୟସେବା କାହିଁରେ ଅଧିକ ଅଗ୍ରସର ହୋଇ ପାରିଲି ନାହିଁ । ରୋଗଜ୍ୱାଳା ଓ ଋଣଜ୍ୱାଳା ଉଭୟ ମୋତେ କଷ୍ଟ ଦେଉଅଛନ୍ତି । ଏ ଦୁହେଁ ପାପର ଦଣ୍ଡ ମାତ୍ର । ସତେ କିଣ ଏଥିରେ ଆତ୍ମା ପବିତ୍ର ହୋଇ ସେହି ଚିନ୍ମୟ ପ୍ରେମାଧାର ଲାଭ କରିବ ?"

ଏହା କହୁଁ କହୁଁ ଦୁଇ ଚକ୍ଷୁ ମୁଦ୍ରିତ ହୋଇଗଲା । ଇତ୍ୟବସରରେ ରାଜମୋହନ ବାବୁ ଆସି ଉପସ୍ଥିତ ହେଲେ । ତାଙ୍କୁ ରାତି ଅଧିକ ହୋଇଥିବାର କହି ମୋତେ ବିଦାୟ ଦେଲେ । ଏଥି ପରେ ମୋର ତାଙ୍କ ସହିତ ଥରେ ମାତ୍ର ସାକ୍ଷାତ୍ ହୋଇଥିଲା । ସେଦିନ କଟକ ଟାଉନ ଭିକ୍ଟୋରିଆ ସ୍କୁଲର କାର୍ଯ୍ୟନିର୍ବାହିକା ସଭାର ଏକ ଅଧିବେଶନ ଥିଲା । ଅଧିବେଶନ ପୂର୍ବରୁ ସେ ମୋତେ ଶ୍ରୀପଞ୍ଚମୀ ଦିନ ସାହିତ୍ୟ ସମ୍ମିଳନୀ କରିବା ବ୍ୟବସ୍ଥା କହିଥିଲେ । ଅଧିବେଶନ ପରେ ଆଉ କିଛି କଥୋପକଥନ ହୋଇନାହିଁ । ସର୍ବଶେଷଥର ଶ୍ମଶାନଭୂମିରେ ସାକ୍ଷାତ୍ । ମୃତ୍ୟୁଶଯ୍ୟାରେ କୁସୁମଦାମଶୋଭିତ ସେହି ଉଜ୍ଜ୍ୱଳ ପ୍ରସନ୍ନ ବଦନ ଚିରକାଳ ସ୍ମୃତିପଟରେ ଲଗି ରହିବ । ଆହା ! କି ପ୍ରଶାନ୍ତ ଉଜ୍ଜ୍ୱଳ ବଦନଶୋଭା; ନୟନ ଦିଓଟି ସତେ କି ଧ୍ୟାନସ୍ତିମିତ ।

ଏହି ମୃତ ମହାତ୍ମାଙ୍କର ପବିତ୍ର ଜୀବନ ପୁରାଣ ପ୍ରଥିତ ଜନକଙ୍କର କର୍ମମୟ ଧର୍ମଜୀବନ ଦ୍ୱାରା ଅନୁପ୍ରାଣିତ ହୋଇଥିଲା ବୋଧହୁଏ । ଗୃହାଶ୍ରମୀ ଯୋଗୀ ଧର୍ମପ୍ରାଣ ଭକ୍ତ ମଧୁସୂଦନ ଈଶ୍ୱରନିଷ୍ଠତା ସହ ସାଂସାରିକ କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦନ କରୁଥିଲେ ଏବଂ ଲୋକସମାଜର ଜନୈକ ଈଶ୍ୱର ପ୍ରେରିତ ଶିକ୍ଷକ ଥାଇ ସତ୍ ଧର୍ମ ଓ ସତ୍ ଶିକ୍ଷାର ପ୍ରଚାର ଓ ବିସ୍ତାର ଦ୍ୱାରା ଉତ୍କଳ ତନୟମାନଙ୍କୁ ଏକ ଅଭିନବ ଆଦର୍ଶ ଦେଖାଇ ଯାଇଅଛନ୍ତି । ଈଶ୍ୱରନିଷ୍ଠ ଋଷିକଳ୍ପ ଭକ୍ତକବି ରାଓ ମଧୁସୂଦନ ଜଣେ କ୍ଷଣଜନ୍ମା ପୁରୁଷ ଏବଂ ଈଶ୍ୱର କରନ୍ତୁ ତାହାଙ୍କର ପରଲୋକଗତ ଆତ୍ମା

ଉତ୍କଳ ତନୟମାନଙ୍କ ଐହିକ ଓ ପାରତ୍ରିକ ଆତ୍ମୋନ୍ନତି ମାର୍ଗରେ ନିତ୍ୟ ପଥ ପ୍ରଦର୍ଶକ ହୋଇ ରହନ୍ତୁ ।

---

# ଶୋକ-ସ୍ମୃତି

ଶ୍ରୀ ଶଶୀଭୂଷଣ ରାୟ
( କବିବର ରାଧାନାଥ ରାୟଙ୍କ ସୁପୁତ୍ର )

ଦୋବନ୍ଧା ଶ୍ମଶାନଭୂମି ! ଆଜି କୁହେଳିକାପୂର୍ଣ୍ଣ ଉଷାରେ ତୋହର ଅଟ୍ଟହାସ୍ୟ ଦେଖି ହୃଦୟ ସ୍ତବ୍ଧ ହୋଇଅଛି । ଗତ ରାତ୍ରିର ଅନନ୍ତ ଅନ୍ଧକାରର ଆବରଣ ତଳେ ମହାପ୍ରାଣ ମଧୁସୂଦନଙ୍କ ଜୀବନ ବନ୍ଧନ ପ୍ରତି ମୁହୂର୍ତ୍ତରେ ଖସି ପଡ଼ୁଥିଲା—ଆତ୍ମୀୟ ବନ୍ଧୁଗଣ, ପୁତ୍ର, କନ୍ୟା, ଜାମାତା ପ୍ରଭୃତି ବିଦାୟ ଦେବାକୁ ମୃତ୍ୟୁଶଯ୍ୟା ନିକଟରେ ସମବେତ ହୋଇଅଛନ୍ତି —ଏହି ଭୀଷଣ ରାତ୍ରିର ଶୋଚନୀୟ ଦୀପ ନିର୍ବାଣୋନ୍ମୁଖ ଦୃଶ୍ୟ ଯଥାଯଥ ରୂପେ ଚିତ୍ରିତ କରିବାକୁ ଚିତ୍ରକର କେହି ନାହାନ୍ତି ସତ୍ୟ, ମାତ୍ର ତୋହର ଆଜି ଏ ଭାବ ପ୍ରାତଃକାଳରୁ ଦେଖି ମୁଁ ଚକିତ ହେଉଅଛି—ବୋଧହୁଏ ମୋହର ଚିରାରାଧ୍ୟ ଦେବତାଙ୍କ ସମୀପକୁ ଏହି ଦୁଃସ୍ଥ ପରିବାରର ସମ୍ବାଦ ପ୍ରେରଣ କରିବାର ସମୟ ଉପସ୍ଥିତ ହେବାକୁ ବସିଲାଣି, ଏହା ସ୍ୱତଃ ମନେ ପଡ଼ୁଅଛି । ପିତୃଦେବଙ୍କ ସମାଧିରେ ଫୁଲ ଅର୍ପଣ କରୁଁ କରୁଁ ମନରେ ଭାବିଲି, ଆଜି ତାଙ୍କର ପ୍ରିୟତମ ଶିଷ୍ୟ ଏବଂ ଜୀବନସଖା ଆମ୍ଭମାନଙ୍କ ସମ୍ବାଦ ନେଇ ତାହାଙ୍କ ନିକଟକୁ ଯାଉଅଛନ୍ତି ଏବଂ ତୋହର ଏହି ସମତାପୂର୍ଣ୍ଣ ଭବ-ସମ୍ବଳିତ ଭୂମି ତାହାଙ୍କୁ ଗ୍ରହଣ କରିବାକୁ ବସିଲାଣି ସିନା ?

ଧୀରେ, ଧୀରେ, ଅତି ଧୀରେ, ମଧୁସୂଦନ ! ଚଞ୍ଚଳ ହୁଅନାହିଁ, ଆଉ ଏହି ସ୍ୱାର୍ଥପର ସଂସାରରୁ ଚିରବିଦାୟ ନେବାକୁ ଏତେ ଚଞ୍ଚଳ ହୁଅନାହିଁ—ଧୀରେ, ଧୀରେ ପରିତ୍ୟକ୍ତ, ଶୋକାର୍ତ୍ତ ପରିବାରବର୍ଗଙ୍କୁ ପଛକୁ ଅନାଇ, ଊର୍ଦ୍ଧ୍ୱ ଦୃଷ୍ଟିରେ ମହାମହେଶ୍ୱରଙ୍କୁ ଧ୍ୟାନକରି ଉପରକୁ ଉଠ । ତୁମ୍ଭର ପ୍ରାଣପ୍ରତିମ ପୁତ୍ର ଜୟନ୍ତ, ପ୍ରଶାନ୍ତ, ସୁକାନ୍ତ ଓ ଶ୍ରୀକଣ୍ଠ, ଲକ୍ଷ୍ମଣ-ପ୍ରତିମ ଅନୁଜ ଜଗନ୍ନାଥ, ପ୍ରିୟତମା କନ୍ୟା ବାସନ୍ତୀ, ରେବା, ଅବନ୍ତୀ, ଶାନ୍ତି, ସାନ୍ତ୍ୱନା ପ୍ରଭୃତିଙ୍କ ସ୍ନେହ ଓ ମାୟାପାଶ ଛିନ୍ନ କରି ଧୀରେ, ଧୀରେ ଚାଲିଯାଅ । ଉପରର ଡାକ ଶୁଣି ବ୍ୟଗ୍ର ହୁଅନାହିଁ,

ଦେବ, ଟିକିଏ ପଛକୁ ଦେଖ । ପୁତ୍ରର ଚିକିତ୍ସା ବିଦ୍ୟା ଶିଖିବା ସାର୍ଥକ ଦେଖିଲ—ଦେବତାରୂପୀ ପିତାଙ୍କ ସେବା ଓ ଶୁଶ୍ରୂଷାରେ ବିଗତ ଏକ ପକ୍ଷ କାଟିଅଛୁ, ଜସ୍ୱନ୍ତକୁ ଚିକିତ୍ସା-ବିଦ୍ୟାରେ ପାରଦର୍ଶୀ କରାଇବା ତୁମ୍ଭର ସାର୍ଥକ ହୋଇଅଛୁ, ଦେବ । ଜସ୍ୱନ୍ତ ଏହି ଚିକିତ୍ସା ବିଦ୍ୟାରେ ଅନେକଙ୍କର ଉପକାର କରିବ, ମାତ୍ର ନିବିଷ୍ଟ ଚିତ୍ତରେ ଅହୋରାତ୍ର ତୁମ୍ଭର ଚିକିତ୍ସାରେ ପୁତ୍ରର ପ୍ରକୃତ କର୍ତ୍ତବ୍ୟର ଯେଉଁ ଆଦର୍ଶ ଦେଖାଇଅଛୁ, ତହିଁରେ ତାହାକୁ ଆଶୀର୍ବାଦ କର, ତାହାର ଜୀବନ-ପଥ ପୁଷ୍ପାସ୍ତୃତ ହେଉ ଏବଂ ଉପରକୁ ଉଠି ସେହି ବିଶ୍ୱପିତାଙ୍କ ନିକଟରେ ସମସ୍ତ ପରିବାରବର୍ଗଙ୍କ ମଙ୍ଗଳ ପ୍ରାର୍ଥନା କର ।

ସବୁ ଶେଷ ହେଲା ! ମୁହୂର୍ତ୍ତିରେ ଭସ୍ମରାଶିରେ ପରିଣତ ହେଲ ପିତା ! ବିଗତ ୫୦ ବର୍ଷ ହେଲା ତୁମ୍ଭ ସହିତ ଏହି ପରିବାରର ସମ୍ବନ୍ଧ, ଏହା ସବୁ ସଂସାର-ଚକ୍ଷୁରେ ତୁଟି ସୁଦ୍ଧା ତୁଟିଲା ନାହିଁ, ରହିଲା ? କେଉଁଠାକୁ ଆସିଲ ? ସେହି ପୋତନ୍ଦା ଶ୍ମଶାନ ଭୂମି କି ? ଯେଉଁଠାରେ ଆଜକୁ ୪ ବର୍ଷ ୮ ମାସ ତଳେ ତୁମ୍ଭର "ପୂଜ୍ୟପାଦ କୈଶୋର-ଗୁରୁ, ପରମାତ୍ମୀୟ ଯୌବନସଖା, ଶିରଜୀବନର ପରମ ହିତୈଷୀ, ପବିତ୍ର-ସାହିତ୍ୟ-ସେବା-ବ୍ରତରେ ପଥପ୍ରଦର୍ଶକ, ବନ୍ଦନୀୟ କବି" ଭସ୍ମରାଶିରେ ପରିଣତ ହୋଇଥିଲେ, ତାହାଙ୍କ ପାର୍ଶ୍ୱରେ ତୁମ୍ଭେ ମଧ୍ୟ ସ୍ଥାନ ଗ୍ରହଣ କଲ ? ବଡ଼ ଦୁଃଖରେ ଦିନେ ଲେଖିଥିଲ :—

"ଏକାନ୍ତେ ଚରଣ-ତଳେ ସୁଖେ ବସିବାର
କାହିଁ ଗଲା ମୋର ସେହି ପୁଣ୍ୟ ଅଧିକାର ?"

ଏବେ ତାହା ସାର୍ଥକ ହେଲାଟିକି ? ହେଉ, ଶାସ୍ତ୍ରକାରଙ୍କ ବଚନ "ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବତି ତାଦୃଶୀ" ଏବେ ଲୋକାନ୍ତରିତ ହୋଇ ସୁଦ୍ଧା ତୁମ୍ଭର ସବୁ ସିଦ୍ଧ ହେଲା ପିତା ? କାଳଚେରରେ ଠିକ୍ ୫ ବର୍ଷ ତଳେ କିଶୋର-ଚନ୍ଦ୍ର-ସାହିତ୍ୟ-ସଭାରେ ତୁମ୍ଭର ବକ୍ତୃତା ଆଜି ସୁଦ୍ଧା କର୍ଣ୍ଣରେ ପ୍ରତିଧ୍ୱନିତ ହେଉଅଛୁ । ସେହି ସଭାର ସଭାପତି ମୋର ଶିରଶ୍ରଦ୍ଧେୟ ରାଧାନାଥଙ୍କ ସମୀପରେ କହିଥିଲ, "ବର୍ତ୍ତମାନ ସଭାପତି ମହାଶୟଙ୍କ ଚରଣ ତଳେ ମୋହର ଅନେକ ଶିଖିବାର ବାକି ରହିଅଛୁ ଏବଂ ତାହାଙ୍କ ଚରଣ-ସେବା କରୁ କରୁ ଅନେକ ଶିଖି ପାରିବି ।" ଏବେ ଦୁହେଁ ଏକତ୍ର, କଣ ଶିଖିବାର ଅଛୁ ଶିଖୁଥାଅ, ଦେବ ।

ପିତୃଦେବ ସ୍ୱର୍ଗାରୋହଣ ପରଠାରୁ କେତେଥର ତୁମ୍ଭେ ଆମ୍ଭମାନଙ୍କ ଘରେ ଉପସ୍ଥିତ ହୋଇ ମୋହର ପରମାରାଧ୍ୟା ମାତୃଦେବୀଙ୍କ ଚରଣଧୂଳି ମସ୍ତକରେ ଗ୍ରହଣ କରିଅଛ, ମାତ୍ର କୌଣସି ଦିନ ଯୋଡ଼ା ସିଦ୍ଧ ଏଠାକୁ ଆସିବାର ଦେଖି ନାହିଁ । କେତେଥର ତୁମକୁ ଯୋଡ଼ା ଆଣିବାକୁ ଅନୁରୋଧ କରିଅଛୁ, ମାତ୍ର ପ୍ରତିଥର

ତୁମ୍ଭେ ଅତି ବିନୀତ ଭାବରେ ମୋହର ଅନୁରୋଧ ପ୍ରତ୍ୟାଖ୍ୟାନ କରିଅଛ । ଗୁରୁ ଭକ୍ତି ଓ ଗୁରୁ-ସନ୍ତାନର ପ୍ରକୃତ ପରିକାଷ୍ଠା ପ୍ରଦର୍ଶନ ଏହାଠାରୁ ଅଧିକ ? ତୁମ୍ଭେ ଏକାନ୍ତ ଆଧୁନିକ ସାହିତ୍ୟର ଉପାସନା ଆରମ୍ଭ କରିଥିଲ, ଆଜି ତୁମେ ଜଣେ ଏକାନ୍ତ ବଡ଼ ବ୍ରହ୍ମୋପାସନାରେ ରତ ହୁଅ । ଯାହାଙ୍କ ଉପାସନା ଅତି ଦୂରରେ ରହି କରୁଥିଲ, ଆଜି ତାହାଙ୍କ ସମୀପସ୍ଥ ହୋଇଅଛ, ଏହି ନୀରସ ପାର୍ଥିବ ଚିନ୍ତା ତୁମ୍ଭଙ୍କୁ ଛାଡ଼ି ପଳାଇ ଗଲାଣି, ଆଉ ଭାବନା କଣ ? ଘୋର ସାଂସାରିକ ହୋଇ ତୁମ୍ଭେ ଏହି ମିଠ ସଂସାରରେ

"ଜୀବାତ୍ମାରେ ପରମାତ୍ମା-ଭୂମା-ଆବିର୍ଭାବ ।"
ତୁମ୍ଭର ଜୀବନରେ ଦେଖାଇ ଯାଇଅଛ ଦେବ !

ତୁମ୍ଭର ରୂପରେ, ତୁମ୍ଭର ବକ୍ତୃତାରେ, ତୁମ୍ଭର ଆକାର-ଇଙ୍ଗିତରେ ସେହି "ସତ୍ୟ-ଶିବ-ସୁନ୍ଦରଙ୍କ" ର ଅବ୍ୟାହତ ଭାବର ପ୍ରତିଧ୍ୱନି ହେଉଥିଲା, ତାହା ମୁଁ ନିତାନ୍ତ କ୍ଷୁଦ୍ର, ବର୍ଣ୍ଣନା କରିବ କଣ ?

ତୁମ୍ଭର ଗୁଣ ବର୍ଣ୍ଣନା କରିବାକୁ ବସିନାହିଁ । ତୁମ୍ଭଙ୍କୁ ଅଗ୍ରଜ ବୋଲି ସବୁବେଳେ ଜାଣିଥିଲି, ତୁମ୍ଭେ ମୋତେ ଅନୁଜ ବୋଲି ସର୍ବଦା ମୋହ ଉପରେ ସ୍ନେହ ଢାଳି ଦେଉଥିଲ । ମୋହର ଜନ୍ମ ସମୟରେ ମୋହର ପରମାରାଧ୍ୟ ପିତୃଦେବ ତୁମ୍ଭର ନାମାନୁସାରେ ମୋହର ନାମକରଣ କରିଥିଲେ—କେବଳ ତୁମ୍ଭର ସ୍ମୃତି ସକାଶେ, ଏହା ସମଗ୍ର ଉତ୍କଳବିଦିତ । "ମଧୁ" ବୋଲି ଡାକିବାକୁ ମୋହର ପିତୃଦେବ ସର୍ବଦା ଭଲ ପାଉଥିଲେ ଏବଂ ଏହି ନାମ ଆମ୍ଭମାନଙ୍କ ପରିବାରବର୍ଗରେ ଆଜି ସୁଦ୍ଧା ପ୍ରଚଳିତ । ସମଗ୍ର ଜୀବନବ୍ୟାପୀ ସମ୍ବନ୍ଧ ତୁମ୍ଭ ସହିତ ଲାଗି ରହିଥିଲା । ଆଜି ଏହି ସମ୍ବନ୍ଧ ଛିନ୍ନ କରିବାର ସମୟ ଉପସ୍ଥିତ ହେଲା, ଏହି ସଂସାରର ରୀତି ! ମାତ୍ର ଯେ ତୁମ୍ଭଙ୍କୁ ବରାବର "ମଧୁ" ବୋଲି ସମ୍ବୋଧନ କରୁଥିଲେ, ତାହାଙ୍କ ନିକଟକୁ ଯାଉଅଛ, ତାହାଙ୍କ ଡାକରେ ତୁମ୍ଭର କର୍ଣ୍ଣ ପରିତୃପ୍ତ ହେଉଥିବ, ତାହାଙ୍କୁ ଆମ୍ଭମାନଙ୍କର ସମ୍ବାଦ ଜଣାଇ ଦେବ ଏବଂ ଏହି ଉତ୍କଳର ବିଗତ ୪୫ ବର୍ଷ ମଧ୍ୟରେ କେତେ ପ୍ରକାର ପରିବର୍ତ୍ତନ ହୋଇ ଗଲାଣି ସମସ୍ତ କହିବ । ସେଠାକୁ Wireless Telegraphy ର ପ୍ରଚଳନ ହୋଇନାହିଁ, ସୁତରାଂ ବର୍ତ୍ତମାନ ସମ୍ବାଦ ପ୍ରେରଣର ତୁମ୍ଭେହିଁ ଅବଲମ୍ବନ, ଏହା ଭାବ କଥଞ୍ଚିତ୍ ନିଶ୍ଚିନ୍ତ ହେଲି ।

ଜ୍ଞାନୀମାନେ ସର୍ବଦା ଉପଦେଶ ଦିଅନ୍ତି, "ମାୟାମୟ ସଂସାରକୁ ଜାଣି ଶୁଣି ସୁଦ୍ଧା ଅବୋଧ ପ୍ରାଣ କାନ୍ଦୁଥାଏ ।" ଏ ପ୍ରବୋଧ ବଚନର ଅର୍ଥ କଣ ଜ୍ଞାନୀମାନେ ବୁଝନ୍ତି ? ମହାମୁନି ଭରତ ହରିଣ ପୋଷିଥିଲେ । ଅନ୍ତିମଶଯ୍ୟାରେ ସୁଦ୍ଧା ସେହି ହରିଣ ସ୍ମୃତିପଥରେ ଆରୂଢ଼ ହୋଇଥିଲା । ଏହା ଯେବେ ସତ୍ୟ ହୁଏ, ତେବେ ମୁଁ

ତୁମ୍ଭର ଚକ୍ଷୁ କପରେ ଗ୍ରନ୍ଥିତ ହୋଇ ବସିବ ? ଏ ଚକ୍ଷୁ ସଂଯୋଗ କରିବାର ମୋହର ଅଧିକାର କିମ୍ବା ଶକ୍ତି ନାହିଁ ଏବଂ ଏହି ଚକ୍ଷୁରେ ତ ତୁମ୍ଭଙ୍କୁ ଲଭ କରିବା ସମ୍ଭବପର । ଏ ଭଳି ସୁଖ-ଚକ୍ଷୁ ତ୍ୟାଗ କରିବାକୁ କାହାକୁ ଉପଦେଶ କିମ୍ବା ପରାମର୍ଶ ଦେବା ଉଚିତ ନୁହେଁ ।

ଶିଷ୍ଟାଚାରସମ୍ମତ କଥାଗୁଡ଼ିକ ମୁଁ ପୂର୍ଣ୍ଣ ଅସ୍ୱାଭାବିକ ବୋଲି ମନେ କରି-ଆଏଁ । କାଳର ଶାସନରେ ସମସ୍ତଙ୍କୁ ତୁମ୍ଭର ମାର୍ଗ ଦେଇ ଯିବାକୁ ହେବ; ଜାଣେ । ତୁମ୍ଭେ ଗ୍ଲଲଗଲ; ମୁଁ କେତେଗୁଡ଼ିଏ ଶିଷ୍ଟାଚାର ସମ୍ମତ ବାକ୍ୟରେ ତୁମ୍ଭର ଗୁଣ ଗାନ କରିବାକୁ ବସିଲି—ମାତ୍ର ତାହି ତ ସ୍ୱାଭାବିକ ନୁହେଁ । ତୁମ୍ଭ ସହିତ ମୋହର ଯେଉଁ ପରମାଣରେ ଓ ଯେଉଁ ଭାବରେ ସମ୍ବନ୍ଧ, କେବଳ ସେତିକି ତୁମ୍ଭଙ୍କୁ ଜଣାଇଲି—ଗ୍ରହଣ କର ନ କର, ତୁମ୍ଭ ଇଚ୍ଛା ।

ଯେଉଁଠାରେ ପୂର୍ଣ୍ଣ ପ୍ରେମ, ସେହିଠାରେ ଅମରତ୍ୱ । ଅମରତ୍ୱର କି ବସ୍ତୁତ ଅଛି ? ତୁମ୍ଭେ ପୂର୍ଣ୍ଣ ପ୍ରେମର ଅବତାର ସ୍ୱରୂପ ଥିଲ, ତୁମ୍ଭର ସ୍ମୃତି ଅପରିହାର୍ଯ୍ୟ । ସ୍ମୃତି ଯେଉଁଭଳି କ୍ଳେଶକର ଅଥବା ଯନ୍ତ୍ରଣାଦାୟକ ହେଉ ପଛକେ, ତାହା ସହିତ ମଧୁରତାର ସମ୍ମିଳନ ଥିବା ଯୋଗୁଁ ଅତ୍ୟନ୍ତ ପ୍ରାଣାରାମ ହୋଇ-ଥାଏ । ସମସ୍ତ ସମୟରେ ମୋହର ଭସ୍ମ ହେଉଅଛି, ସମୟ ମୋହର ଏହି ଜୀବନ ସମ୍ବଳ ସ୍ମୃତିଟିକି କାଳେ ଅପହରଣ କରି ପକାଇବ ପରା ?

ଯାଅ ମଧୁସୂଦନ ! ସାଧନ-ବ୍ରତ ଉଦ୍‌ଯାପିତ କରିଅଛ—ଏତେବେଳେ ସେହି ନିତ୍ୟଧାମକୁ ଗ୍ଲଲିଯାଅ । ଏହି ଚର୍ମଚକ୍ଷୁରୁ ଅଦୃଶ୍ୟ ହୋଇ ତୁମ୍ଭର ଯୋଗ୍ୟ ଲୋକାନ୍ତରକୁ ଗ୍ଲଲିଯାଅ, ଆମ୍ଭେମାନେ ଚକ୍ଷୁ ମୁଦ୍ରିତ କରି ଅନ୍ତରର ଅନ୍ତରତମ ସ୍ଥଳରେ ତୁମ୍ଭର ଗୁଣରାଶି ସ୍ମରଣ କରୁଥିବୁଁ ଏବଂ ତୁମ୍ଭର କଥାରେ ଆବୃତ୍ତି କରୁଥିବୁଁ :—

"ଯାଇଅଛ ଗ୍ଲଲି ଦେବ                    ଚିରକାଳ ପାଇଁ
        ଦିବ୍ୟ-ଧାମ ଅମର ନଗରେ,
ଏ ମର୍ତ୍ତ୍ୟ ନୟନ ଆଉ                    ବିଲୋକିବ ନାହିଁ
        ମାଧୁର୍ଯ୍ୟମୟ ତବ କଲେବରେ ।"

ତୁମ୍ଭର ପାର୍ଥିବ ସତ୍କାର ଶେଷ କରି ତୁମ୍ଭର ବଂଶଧରମାନଙ୍କ ସହିତ ପରମ ପ୍ରୀତିପଦ ପବିତ୍ର ଗୋଧୂଳି ସମୟରେ ଶ୍ମଶାନରୁ ଫେରୁଅଛୁ । ଗୋଧୂଳିର ସ୍ୱର୍ଣ୍ଣ କିରଣ ବୃକ୍ଷଶିରରେ ମଳିନାଭ ରୂପେ ପ୍ରତିଭାତ ହୋଇ ବର୍ତ୍ତମାନ ସନ୍ଧ୍ୟାର

ଆଗମନ ବାର୍ତ୍ତା ପ୍ରସ୍ତରରେ ଉଦ୍ୟତ ହେଲଣି । ବର୍ତ୍ତମାନ ତୁମ୍ଭର ଅମୃତମୟ ସ୍ୱସ୍ତିବୋକ୍ତି ସ୍ମରଣ ହେଉଅଛି :—

"ସନ୍ଧ୍ୟା ହେଲା, ସନ୍ଧ୍ୟା ହେଲା, ବୋଲି ପକ୍ଷୀଗଣ
ରବ ଦେଇ ଯେଝା ବାସେ କରନ୍ତି ଗମନ;
ଧୂଳି ଉଡ଼ାଇଣ ଦାଣ୍ଡେ କରି ହମ୍ବାରଡ଼ି
ଯାଉଛନ୍ତି ଗୋରୁପଲ ଗୋଠରୁ ବାହୁଡ଼ି ।"

---

# ରାୟ ମଧୁସୂଦନ ରାଓ ବାହାଦୁର

ଶ୍ରୀ ନନ୍ଦକିଶୋର ବଳ

ଇଂରେଜ ଶାସନ ଓ ଆଇନ ଓ ପ୍ରତୀଚ୍ୟ ସାହିତ୍ୟ, ବିଜ୍ଞାନ ଓ ସଭ୍ୟତା ରୂପ ମନ୍ଦରଗିରି ସାହାଯ୍ୟରେ ରତ୍ନପ୍ରସୂ ଭାରତସମୁଦ୍ରର ମନ୍ଥନରେ ପ୍ରତ୍ୟେକ ପ୍ରଦେଶରେ କେତେଗୁଡ଼ିଏ ରତ୍ନର ଆବିର୍ଭାବ ହେଲା । ବଙ୍ଗ ଦେଶରେ ରାଜା ରାମମୋହନ ରାୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, କେଶବଚନ୍ଦ୍ର ସେନ, ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ, ମାଇକେଲ୍ ମଧୁସୂଦନ ଦତ୍ତ, ରେଭରେଣ୍ଡ କେ. ଏମ୍. ବାନାର୍ଜି; ବୋମ୍ବାଇ ପ୍ରଦେଶରେ ଗୋବିନ୍ଦ ମହାଦେବ ରାନାଡ଼େ, ବାଲ୍ ଗଙ୍ଗାଧର ତିଳକ, ଗୋଖେଲ୍, ଚନ୍ଦ୍ରବର୍କର ପ୍ରଭୃତି; ପଞ୍ଜାବ ପ୍ରଦେଶରେ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଏହି ପ୍ରାଚ୍ୟ-ପ୍ରତୀଚ୍ୟ-ସମ୍ମିଳନର ଫଳ ।

ଛିନ୍ନ ବିଭିନ୍ନ ଖଣ୍ଡୀକୃତ ଖର୍ବୀକୃତ ଉତ୍କଳ ଆକାର, ଜନସଂଖ୍ୟା ଓ ଉର୍ବରତା ଅନୁଯାୟୀ ଉକ୍ତ ସିନ୍ଧୁ ମନ୍ଥନର ଫଳରୁ ଏକାବେଳକେ ବଞ୍ଚିତ ହୋଇ-ନାହିଁ । ଗଡ଼ଜାତର ନଅଗଡ଼ ଗିରିଗୁହାବାସୀ ଇଂରାଜ-ଜ୍ଞାନରହିତ ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ବୋଧହୁଏ ଏ ମିଳନ ପ୍ରସୂତ ନୁହନ୍ତି । ତାହାଙ୍କୁ ଛାଡ଼ି ଦେଲେ ମିଷ୍ଟର ଏମ୍ ଏସ୍. ଦାସ, ସି ଆଇ. ଇ. ରାୟ ନନ୍ଦକିଶୋର ଦାସ ବାହାଦୁର, ରାୟ ରାଧାନାଥ ରାୟ ବାହାଦୁର, ରାୟ ମଧୁସୂଦନ ରାଓ ବାହାଦୁର, କବି ଫକୀର ମୋହନ ସେନାପତି, ଗୌରୀଶଙ୍କର ରାୟ, ପ୍ୟାରୀମୋହନ ଆଚାର୍ଯ୍ୟ ଏହି ମଣିକାଞ୍ଚନ ସଂଯୋଗର ଫଳ । ଏହି ଦଳଟି ଆବିର୍ଭୂତ ହୋଇ ଉତ୍କଳର ଭିନ୍ନ ଭିନ୍ନ କେତେକ ବିଷୟରେ ଯାହା କଲେ, ତାହା ଅନ୍ୟାନ୍ୟ ପ୍ରଦେଶ

ତୁଳନାରେ ମହାନ୍ ନ ହୋଇପାରେ, କିନ୍ତୁ ଓଡ଼ିଶାରେ ସଂସ୍କାରଯୁଗ ପ୍ରବର୍ତ୍ତକ ଦେଶର ଏହି କୃତୀ ଗୁଣିମାନଙ୍କ ସ୍ଥାନର ପୂରଣ ନିକଟ ଭବିଷ୍ୟତରେ ହେବାର ସମ୍ଭାବନା ନାହିଁ । ବର୍ତ୍ତମାନ ତାହା ଜଣାପଡ଼ୁ ନାହିଁ । ଏମାନଙ୍କ ପରେ ଯେଉଁ ଅନ୍ଧକାର ଆସୁଅଛି, ତାହା ସମ୍ପୂର୍ଣ୍ଣ ଅସିଲେ ଏହି ପ୍ରଗତି ସୁବର୍ଣ୍ଣ ଯୁଗ ରୂପେ କିଛି କାଳ ସମ୍ମାନିତ ହେବ । ଏହି ଯୁଗର ଏକତମ ବରିଷ୍ଠ ପୁରୁଷ ରାୟ ମଧୁସୂଦନ ରାଓ ବାହାଦୁରଙ୍କ ସମ୍ବନ୍ଧରେ ଏ ପ୍ରବନ୍ଧରେ କିଛି ଆଲୋଚନା କରିବି ।

ମଧୁସୂଦନଙ୍କର ବିଶେଷତ୍ୱ ଏହି ଯେ ସେ ଏକାଧିକ କର୍ମକ୍ଷେତ୍ର ରେ କାର୍ଯ୍ୟ କରି କୃତିତ୍ୱ ଲାଭ କରିଥିଲେ । ତାଙ୍କର ପ୍ରଧାନ କର୍ମକ୍ଷେତ୍ର ଥିଲା ଧର୍ମସାଧନ ଓ ଧର୍ମ ପ୍ରଚାର, ଗୃହଧର୍ମ ପାଳନ ଓ ଅତିଥି ସତ୍କାର, ଜ୍ଞାନାର୍ଜନ ଓ ସାହିତ୍ୟ ସେବା, ଶିକ୍ଷା ବିସ୍ତାର ଓ ସମାଜ ସଂସ୍କାର, ଯୋଗ ସାଧନ ଓ ବିଶୁଦ୍ଧ ଜୀବନଲାଭ । ଏହି ପ୍ରତ୍ୟେକ ବିଭାଗରେ ସେ ଯାହା ଯାହା କରି ଯାଇଅଛନ୍ତି, ତହିଁରୁ ଗୋଟି ଗୋଟିକ ଦ୍ୱାରହିଁ ସେ ସମାଜର ଉଚ୍ଚସ୍ଥାନ ଲାଭ ପାଇଥାନ୍ତେ । ପରନ୍ତୁ ଏହି ସବୁ ଗୁଣଗୁଡ଼ିକ ଏକତ୍ର ସମାବିଷ୍ଟ ହୋଇଥିବାରୁ ତାଙ୍କ ଜୀବନକାଳ ମଧ୍ୟରେ ହିଁ ସେ "ଋଷି", 'ଆଦର୍ଶ ପୁରୁଷ", "ଭକ୍ତକବି" ପ୍ରଭୃତି ଆଖ୍ୟା ଲାଭ କରିଥିଲେ । ଉତ୍କଳର କୌଣସି ବ୍ୟକ୍ତିଙ୍କ ସମ୍ବନ୍ଧରେ ଏ କଥା କୁହାଯାଇ ନ ପାରେ । ତେଣୁ ଉତ୍କଳର ମୁଖପତ୍ର "ଉତ୍କଳ ଦୀପିକା" ଓ "ନବ୍ୟ ଭାରତ" ସହିତ ଏକମତ ହୋଇ ତାଙ୍କୁ "ମହାତ୍ମା" ଅଭିଧାନ ପ୍ରଦାନ ପୂର୍ବକ ହୃଦୟରେ ଆଦର୍ଶ ପୁରୁଷ ରୂପେ ପ୍ରତିଷ୍ଠିତ କରିବାକୁ ଇଚ୍ଛା ହେଉଅଛି ।

ବୁଦ୍ଧଦେବଙ୍କ କର୍ମଯୋଗ, ଶ୍ରୀ ଚୈତନ୍ୟଙ୍କ ଭକ୍ତିଯୋଗ, ଈଶାଙ୍କ ସରଳ ପ୍ରେମଯୋଗ, ମହମ୍ମଦଙ୍କ ନିର୍ମଳ ଏକେଶ୍ୱରବାଦର ସୁନ୍ଦର ସମାବେଶ ଆମ୍ଭମାନଙ୍କ ଚକ୍ଷୁ ସମ୍ମୁଖରେ ହୋଇଅଛି । ଆମ୍ଭେମାନେ ଭାଗ୍ୟବାନ୍, ଯେହେତୁ ଜଣେ ପ୍ରକୃତ ମହାପୁରୁଷ, ମହାପ୍ରାଣ ମହାତ୍ମା, ଭକ୍ତ ପ୍ରେମିକ, ଜ୍ଞାନୀ, କର୍ମବୀର ଆମ୍ଭମାନଙ୍କ ସମାଜରେ ଉତ୍କଳ ଜନନୀଙ୍କ କୋଳରେ ଆବିର୍ଭୂତ ହୋଇ ଏହି ସମାଜରେ ସ୍ୱଜୀବନର ପ୍ରଭା ବିସ୍ତାର କରି ତିରୋହିତ ହେଲେ । ଉତ୍କଳ ଜନନୀଙ୍କ ପବିତ୍ର ଅଙ୍କ ମହାପୁରୁଷ ପୋଷଣରେ ଅନୁକୂଳ । ଏହିଠାରେ କର୍ମଯୋଗୀ ଗୌତମ ବୁଦ୍ଧଙ୍କ ମହାଧର୍ମ ଦୁଇ ସହସ୍ର ବର୍ଷ ଲୀଳା କରି ଭାରତରୁ ଷୋଡ଼ଶ ଶତାବ୍ଦୀରେ ସର୍ବ-ଶେଷରେ ଲୁପ୍ତ ହେଲା । ଲୁପ୍ତ ହୋଇ ଲୁପ୍ତ ହୋଇନାହିଁ । ଏବେ ମଧ୍ୟ ଶ୍ରୀକ୍ଷେତ୍ରରେ, ଖଣ୍ଡଗିରିରେ, ଉଦୟଗିରିରେ, ଲଳିତଗିରିରେ, କୌଣସି ଗଡ଼ରେ, ଗ୍ରାମେ ଗ୍ରାମେ ଯତ୍ରପନ୍ଥୀ ଦଳରେ ବୌଦ୍ଧଧର୍ମର ପ୍ରଭାବ ରହିଅଛି । ଏହିଠାରେ ଶଙ୍କର, କବୀର ପ୍ରଭୃତି ଧର୍ମପ୍ରଚାରକମାନେ ଧର୍ମ ପ୍ରଚାର କରିଥିଲେ । ଶ୍ରୀ ଚୈତନ୍ୟ ଏହି

ସ୍ଥାନକୁ ଖ୍ରୀଷ୍ଟ ପ୍ରେମଧର୍ମର ସାଧନ ଓ ପ୍ରଚ୍ଚରର ଅନୁକୂଳ ସ୍ଥଳ ଜାଣି ଶେଷ ଜୀବନ ଯାପନ କଲେ । ଏହି ଦେଶରେ ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ, ବ୍ରାହ୍ମ ଧର୍ମର ସମନ୍ୱୟ ହୋଇଅଛି । ପୁଣ୍ୟଭୂମିର ଅଧିବାସୀ ଉତ୍କଳୀୟମାନଙ୍କ ପ୍ରଶାନ୍ତ, ଧୀର, ସହିଷ୍ଣୁ ସ୍ୱଭାବ ପଶୁ ପ୍ରକୃତିର ଲୋକମାନଙ୍କ ଦ୍ୱାରା ବା ପାଦ ପୌତ୍ତଳିକମାନଙ୍କ ଦ୍ୱାରା ଦୂଷିତ ହେଲେ ମଧ୍ୟ ତାହା ଧର୍ମ ସମନ୍ୱୟର ବିଶେଷତଃ ବୌଦ୍ଧଧର୍ମର ଫଳ ବୋଲି ଅନୁମିତ ହୁଏ । ପଲ୍ଲୀଗ୍ରାମର ମୂର୍ଖ ବୃଦ୍ଧ କୃଷକମାନଙ୍କ ଠାରୁ ମଧ୍ୟ ଦର୍ଶନର ଶ୍ରେଷ୍ଠ ତତ୍ତ୍ୱମାନଙ୍କ ସୁନ୍ଦର ମୀମାଂସା ଶୁଣାଯାଏ । ଏହି ଉତ୍କଳ ମଧୁସୂଦନଙ୍କର ଉପଯୁକ୍ତ କର୍ମକ୍ଷେତ୍ର ।

ଧର୍ମସାଧନ ଓ ଧର୍ମ ପ୍ରଚ୍ଚର—ମଧୁସୂଦନ ସ୍ୱଭାବତଃ ସାଧକ ଋଷି । ଅତି ଶୈଶବକାଳରୁ ତାଙ୍କ ପ୍ରାଣ ଭଗବତ୍ପ୍ରେମଭିକ୍ଷୁ ହୋଇ ବ୍ୟାକୁଳ ହୋଇଥିଲା । ସେ ଏ ସମ୍ବନ୍ଧରେ ପ୍ରସଙ୍ଗକ୍ରମେ କେତେକ କଥା କହିଥିଲେ । ବାଲ୍ୟକାଳରେ ପ୍ରତିଭାବାନ୍ ପୁରୁଷଙ୍କ ମନରେ ବ୍ୟାକୁଳତା ଜାତ ହୁଅନ୍ତେ ମନେ ମନେ କହିଲେ, "ହେ ଈଶ୍ୱର ! କେଉଁଠାରେ କପର ଅଛ, ମୋତେ ସ୍ୱୟଂ ଦେଖାଦିଅ, ପଥ ପ୍ରଦର୍ଶନ କର; ଏ ଯେ ଘୋର ସଂସାର ଅରଣ୍ୟ ! କାହିଁ ଯିବି ? ନାନା ମୁନିଙ୍କର ନାନା ମତ; କେଉଁଟି ଗ୍ରହଣୀୟ ?"

ଏହିପରି ମାନସିକ ଅବସ୍ଥାରେ ଦିନେ ରାତ୍ରରେ ଯୁବକ ସ୍ୱପ୍ନ ଦେଖିଲେ— ଜ୍ୟୋତ୍ସ୍ନାବିଧୌତ ଆକାଶମଣ୍ଡଳ ତଳେ ଉତ୍ତାଳ ତରଙ୍ଗମୟ ଗମ୍ଭୀର ଗର୍ଜନକାରୀ ଘୋର ସମୁଦ୍ର ତଟରେ ସେ ସମାସୀନ । ଦେଖୁଁ ଦେଖୁଁ ସ୍ଥାନଟି ଜନଶୂନ୍ୟ ହୋଇଗଲା । ଭୟ ଆସି ପ୍ରାଣକୁ ଗ୍ରାସ କଲା । ନିଃଶବ୍ଦ ନିଶୀଥ ସମୟରେ ନିର୍ଜନ ମରୁଭୂମି ରୁକ୍ଷ ବେଳାଭୂମିରେ ଯୁବକ ଆତଙ୍କରେ ଡାକିଲେ; "ହେ ପ୍ରଭୋ ! ମୋତେ ରକ୍ଷା କର ।" ଅଦୂରରେ ବିଭୂତିଭୂଷିତ ଜଟାମଣ୍ଡିତ ଦୀର୍ଘାକାର ବିରାଟ ପୁରୁଷ ଉଭା ହୋଇ ହସ୍ତ ସଙ୍କେତରେ ଯୁବକଙ୍କୁ ଅନୁସରଣ କରିବାକୁ ଆଦେଶ ଦେଲେ । ବିଶ୍ୱାସୀ ଯୁବକ ନିର୍ଭୟରେ ଆଶ୍ୱାସପ୍ରାପ୍ତ ହୋଇ ଉତ୍ପରାସ୍ୟ ହୋଇ ଅଗ୍ରସର ହେଲେ । ଶେଷରେ ଦୀର୍ଘାକାର ପୁରୁଷ ବଡ ଦେଉଳରେ ମିଶି ଏକାକାର ହୋଇଗଲେ । ଯୁବକ ମଧୁସୂଦନଙ୍କର ନିଦ୍ରାଭଙ୍ଗ ହେଲା । ସେ ବିଚ୍ଚର କଲେ, ଏ କି ସ୍ୱପ୍ନ ? ଏହାର ସଙ୍କେତ କ'ଣ ? ଏ ଜୀବନ-ମରୁଭୂମିରେ ଏ ଭବ-ସମୁଦ୍ରରେ ଏକା ସେହି ଭୂମା ଜଗଦ୍‌କର୍ତ୍ତା ପରମେଶ୍ୱର ମାନବର ଆଶ୍ରୟ ସ୍ଥଳ । ଏହି ବିଶ୍ୱାସରେ ଅନୁପ୍ରାଣିତ ହୋଇ ସେ ଧର୍ମଜୀବନ ଆରମ୍ଭ କଲେ । ପ୍ରକୃତ ପକ୍ଷରେ ଧର୍ମଜୀବନର ଉନ୍ମେଷ ହୋଇଥିଲା ଶୈଶବ ସୀମାନ୍ତରେ; ଯୌବନ ପ୍ରଭାତରେ ଯାହାଙ୍କ ସ୍ୱପ୍ନ ମଧ୍ୟ ଭକ୍ତର ସ୍ୱପ୍ନ ଥିଲା; ତାଙ୍କର ଭକ୍ତ ଜୀବନର ଅବଶ୍ୟମ୍ଭାବୀ ।

"ତୁଳସୀ ବୃକ୍ଷ ପରକୁ ବାଏ ।" ତୁଳସୀ ବୃକ୍ଷ ପରି ମଧୁସୂଦନ ପରିବାର ପ୍ରଭାବ ବିସ୍ତାର କରି ଯାଇଅଛନ୍ତି ।

ତାଙ୍କ ଜୀବନର ଏହି ଅବସ୍ଥାର ଅନ୍ୟ ଗୋଟିଏ ସ୍ୱପ୍ନର ବୃତ୍ତାନ୍ତ ତାଙ୍କଠାରୁ ମୁଁ ଶୁଣିଅଛି । ଥରେ ସେ ଦେଖିଲେ, ଜଣେ ସୁପ୍ରସିଦ୍ଧ ବିଖ୍ୟାତ ପଣ୍ଡିତ ( ନାମ ମୋର ମନେ ନାହିଁ ) ପ୍ରକାଣ୍ଡ ଜ୍ୱଳନ୍ତ କାଷ୍ଠ ଖଣ୍ଡେ ସ୍କନ୍ଧରେ ଘେନି ବଡ଼ ଦାଣ୍ଡରେ ଦଉଡ଼ୁଅଛନ୍ତି । ଯଥାସମ୍ଭବ ଯତ୍ନ ସତ୍ତ୍ୱେ କାଷ୍ଠଖଣ୍ଡ ତାଙ୍କ ସ୍କନ୍ଧଚ୍ୟୁତ ହେଉନାହିଁ । ଯାହାଙ୍କୁ ପଥରେ ଦେଖୁଅଛନ୍ତି, ତାହା ଉପରେ ତାହାକୁ ନିକ୍ଷେପ କରୁଅଛନ୍ତି । ଅନେକେ ପ୍ରାଣଭୟରେ ପଳାଉଅଛନ୍ତି । ଯେ ନିକଟରେ ରହୁଅଛନ୍ତି, ସେ ପୋଡ଼ି ମରୁଅଛନ୍ତି । ଶେଷରେ ପଣ୍ଡିତ ନରକରେ ନିମଗ୍ନ ହେଲେ । ସ୍ୱପ୍ନ ଭାଙ୍ଗିଗଲା । କିଛିକାଳ ପରେ ଉକ୍ତ ପଣ୍ଡିତ ପ୍ରକୃତରେ ଅଗ୍ନିରେ ଦଗ୍ଧ ହୋଇ ପ୍ରାଣତ୍ୟାଗ କଲେ । ସ୍ୱପ୍ନର ଅର୍ଥ କ'ଣ ? ଉକ୍ତ ପଣ୍ଡିତ ନାସ୍ତିକ ଥିଲେ । ଜ୍ୱଳନ୍ତ କାଷ୍ଠଖଣ୍ଡ ତାଙ୍କର ନାସ୍ତିକତା । ନାସ୍ତିକର ପ୍ରାଣ ସର୍ବଦା ପ୍ରଜ୍ୱଳିତ, କ୍ଳିଷ୍ଟ, ଅଶାନ୍ତିମୟ । ନାସ୍ତିକ ସମ୍ପର୍କରେ ରହିଲେ ମାନବପ୍ରାଣ ଦଗ୍ଧ ଅଶାନ୍ତିମୟ ହୋଇଯାଏ । ପରିଣାମରେ କୃପାମୟଙ୍କ କୃପାବାରିରେ ଚିରବିଶ୍ରାମ ମିଳେ । ମଧୁସୂଦନଙ୍କ ଉଦ୍ଦାମ ଯୌବନରେ ଏହିପରି ଧର୍ମଜୀବନର ଭିତ୍ତି ସ୍ଥାପିତ ହୋଇଥିଲା ।

ତାଙ୍କର ସମବୟସ୍କ ସମଧର୍ମୀ ଚାରିଜଣ ବନ୍ଧୁ ଥିବାର ସେ ଅନେକଥର କହୁଥିଲେ । ଏକାଡେମୀର ପ୍ରତିଷ୍ଠାତା, ଶୌଟହୋପିନ୍, କଲ୍ଟା, ବ୍ରାହ୍ମ ଦର୍ଶୀୟ ପ୍ୟାରୀମୋହନ ଆଚାର୍ଯ୍ୟ, ଡେପୁଟି ଇନ୍‌ସପେକ୍ଟର ଶ୍ରୀଯୁକ୍ତ ଭଗବତୀଚରଣ ଚଟ୍ଟୋପାଧ୍ୟାୟ, ବାଲେଶ୍ୱରରେ କବି ଶ୍ରୀଯୁକ୍ତ ବଳରାମ ଦାସ, ହରିହରପୁରର ବିଖ୍ୟାତ ଓକିଲ ଶ୍ରୀଯୁକ୍ତ ବିପ୍ରଚରଣ ଚଟ୍ଟୋପାଧ୍ୟାୟ, ଏହି ଚାରିଜଣ ଏକପ୍ରାଣରେ ସ୍ୱଦେଶର ଦୁର୍ଦ୍ଦଶା ଦୂର କରିବାରେ ବଦ୍ଧପରିକର ହୋଇଥିଲେ । ସମସ୍ତଙ୍କ ପ୍ରାଣରେ ବ୍ରହ୍ମଭକ୍ତି, ସାହିତ୍ୟ ସେବା, ସ୍ୱଦେଶ ପ୍ରୀତିର ଉଚ୍ଛ୍ୱାସ ଜାଗ୍ରତ ହୋଇଥିଲା । ଅନ୍ୟମାନେ ନିଜ ନିଜ ରୁଚି ଅନୁସାରେ ସମାଜରେ ପ୍ରତିଷ୍ଠା ଲଭିଲେ । ମଧୁସୂଦନ ଓ ପ୍ୟାରୀମୋହନ ନରନାରାୟଣ ସଦୃଶ ଅଭେଦାତ୍ମା ହୋଇ ଶେଷ ପର୍ଯ୍ୟନ୍ତ ବ୍ରହ୍ମୋପାସନା, ସାହିତ୍ୟ ସେବା, ଶିକ୍ଷାବିସ୍ତାରରେ ବିନିଷ୍ଟମନା ହୋଇଥିଲେ ।

ଏଫ୍. ଏ. ପାସ୍ କରି ସେ ଯାଜପୁର ବିଦ୍ୟାଳୟରେ ଯେତେବେଳେ ପ୍ରଧାନ ଶିକ୍ଷକ ସ୍ୱରୂପ କାର୍ଯ୍ୟ କରୁଥିଲେ, ସେତେବେଳେ ତାଙ୍କର ପୂର୍ଣ୍ଣ ଯୌବନ । ଏହି ପୂର୍ଣ୍ଣ ଯୌବନରେ ହିଁ ତାଙ୍କର ଧର୍ମପିପାସା ପୂର୍ଣ୍ଣରୂପେ ଜାଗ୍ରତ ହୋଇଥିଲା । ଗମ୍ଭୀର ନିର୍ଜ୍ଜନ ନିଶୀଥରେ ସେ ଅନନ୍ତ ଆକାଶକୁ ଅନାଇ ପ୍ରାଣେଶ୍ୱରଙ୍କୁ ବ୍ୟାକୁଳ

ଭାବରେ ଅନ୍ୱେଷଣ କରୁଥିଲେ । ତାଙ୍କ ନୟନରୁ ଦରଦରଧାରରେ ବହ୍ନେ ଅଶ୍ରୁ ପ୍ରବାହିତ ହେଉଥିଲା । ଏହି ଅଶ୍ରୁପାତର ଜଣେ ମାତ୍ର ସାକ୍ଷୀ ଅଛନ୍ତି ବୋଲି ସେ ଅତେ କହୁଥିଲେ । ସେ ସାକ୍ଷୀ ତାଙ୍କର ଚତୁର୍ଦ୍ଦଶ ବର୍ଷ ବୟସ୍କା ସହଧର୍ମିଣୀ । କି ଗଭୀର ଧର୍ମପିପାସା ! କି ଅପୂର୍ବ ଅସାଧାରଣ ଈଶ୍ୱରପ୍ରୀତି ! ଧ୍ରୁବ, ପ୍ରହ୍ଲାଦ କଳିକାଳରେ ମଧ୍ୟ ଦେଖା ଦିଅନ୍ତି । ଏହିପରି ସଂଶୟରେ ପଡ଼ି ମାର୍ଟିନୋ, ଥିଓଡ଼ର ପାର୍କର ପ୍ରଭୃତିଙ୍କ ଗ୍ରନ୍ଥ, ପାଶ୍ଚାତ୍ୟ ଦର୍ଶନଶାସ୍ତ୍ର, ଉପନିଷଦ୍ ଗୀତା, ପଞ୍ଚଦଶୀ ପ୍ରଭୃତି ସଂସ୍କୃତ ଦର୍ଶନ; ରାମମୋହନ, ଦେବେନ୍ଦ୍ରନାଥ, କେଶବଚନ୍ଦ୍ର ପ୍ରଭୃତି ମହାପୁରୁଷଙ୍କ ଜୀବନଚରିତ ଓ ଉପଦେଶ ମୃତ ପ୍ରାପ୍ତହୋଇ ମଧୁସୂଦନ ଖ୍ରୀଷ୍ଟ ଧର୍ମଜୀବନକୁ ଦୃଢ଼ଭିତ୍ତି ଉପରେ ସଂସ୍ଥାପନ ପୂର୍ବକ ବହୁବର୍ଷ ବ୍ୟାପୀ ସାଧନ ଦ୍ୱାରା ନିଜ ମନରେ ଏବଂ ବହୁ ବର୍ଷ ବ୍ୟାପୀ ପ୍ରଚାର ଦ୍ୱାରା ଉତ୍କଳରେ ବ୍ରାହ୍ମଧର୍ମକୁ ପ୍ରତିଷ୍ଠିତ କରିଯାଇ ଅଛନ୍ତି । ତାଙ୍କର ଜୀବନର ସୁନ୍ଦର ପବିତ୍ର ଉଦାର ଆଦର୍ଶ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ତଦୀୟ ଉପାସନା, ବକ୍ତୃତା, ପ୍ରବନ୍ଧ, ସଙ୍ଗୀତ, ଆଳାପ—ନାନା ଭାବରେ ଅନେକ ପ୍ରାଣକୁ ସ୍ପର୍ଶ କରିଅଛି । ଭଗବାନ୍ କରନ୍ତୁ, ସେହି ସୂକ୍ଷ୍ମ ଉପ୍ତ ବୀଜ କାଳକ୍ରମେ ମହାଦ୍ରୁମରେ ପରିଣତ ହେଉ ।

ଜୀବନ କେବେ ବୃଥା ହୁଏନାହିଁ । ଏତେବଡ଼ ସାଧୁଜୀବନ କି କେବେ ବୃଥାହେବ ? ବ୍ରାହ୍ମସମାଜ ଦ୍ୱାରା ହେଉ, ବା ତତ୍‌ସୃଷ୍ଟ ସୁସଂସ୍କୃତ ସାହିତ୍ୟ ଦ୍ୱାରା ହେଉ, ତାଙ୍କ ଜୀବନର ଫଳ ବହୁଦୂରବ୍ୟାପୀ ହେବ, ଏହା ଆମ୍ଭମାନଙ୍କର ବିଶ୍ୱାସ ଏବଂ ଆଶା । ମଧୁସୂଦନଙ୍କ ଜୀବନର ଫଳସ୍ୱରୂପ, ତାଙ୍କର ଜୀବନବ୍ୟାପୀ କାର୍ଯ୍ୟର ସଫଳତା ସ୍ୱରୂପ ତାଙ୍କର ଉପଯୁକ୍ତ ଶିଷ୍ୟ ବିଶ୍ୱନାଥ କର୍କୁ ସେ କାର୍ଯ୍ୟକ୍ଷେତ୍ରରେ ରଖିଯାଇ ଅଛନ୍ତି । ବ୍ରାହ୍ମସମାଜକୁ ଉତ୍କଳର ନିଜସ୍ୱ ( an institution of the soil ) କରିବା ମଧୁସୂଦନଙ୍କ ଜୀବନର ପ୍ରଧାନ ଆକାଙ୍କ୍ଷା ଥିଲା । ଏହି ଆଶା କେବଳ ବିଶ୍ୱନାଥଙ୍କ ଜୀବନରେ ଫଳବତୀ ହୋଇଅଛି ଓ ହେବ । ଯେ ଯାହା କହନ୍ତୁ ବା କରନ୍ତୁ, ବ୍ରାହ୍ମ ସମାଜ ଉତ୍କଳରେ ବଡଘର ସ୍ୱରୂପ ଥାଇ ଖଣ୍ଡ ଖଣ୍ଡ ସଂସ୍କାରକ ସମାଜ ବା ଦଳର ଆଦର୍ଶ ସ୍ୱରୂପ କାର୍ଯ୍ୟ କରୁଅଛି ।

ଶିକ୍ଷା ବିସ୍ତାର—ଶିକ୍ଷା ବିସ୍ତାରାର୍ଥେ ମଧୁସୂଦନ ଚିରଜୀବନ ସଚେଷ୍ଟ ଥିଲେ । ସକଳ ଉନ୍ନତିର ମୂଳ ଶିକ୍ଷା । ଶିକ୍ଷା ବିସ୍ତାର ହେଲେ ସମାଜ ସଂସ୍କାର ବଳେ ହେବ । ଏକ ପ୍ରାଣସଖା ପ୍ୟାରୀମୋହନ ଯେତେବେଳେ ଏକାଡେମୀ ସ୍ଥାପନ କଲେ, ମଧୁସୂଦନ ତାଙ୍କର ଦକ୍ଷିଣହସ୍ତ ଥିଲେ । ପ୍ରଥମେ ଏକାଡେମୀ ବ୍ରାହ୍ମସମ୍ପୃକ୍ତ ବିଦ୍ୟାଳୟ ଥିଲା । ବିପିନଚନ୍ଦ୍ର ପାଲ ପ୍ରଭୃତି ତିନି ଜଣ ଉତ୍ସାହୀ ବ୍ରାହ୍ମ ଯୁବକ ଏହି ବିଦ୍ୟାଳୟରେ ଶିକ୍ଷକ ନିଯୁକ୍ତ ହୋଇଥିଲେ । ଏବେ ସେହି

ବିପିନ ଚନ୍ଦ୍ର ପାଲ ଭାରତ ବିଖ୍ୟାତ ବକ୍ତା । ଏକାଳରେ ପ୍ୟାରୀମୋହନଙ୍କ ତିରୋଧାନ ହେବାରୁ ଉକ୍ତ ବିଦ୍ୟାଳୟ ବ୍ରାହ୍ମମାନଙ୍କ କର୍ତ୍ତୃତ୍ୱାଧୀନତାରୁ ଗଲା । ପ୍ରଥମରୁ ବ୍ରାହ୍ମମାନଙ୍କ ମାଘୋତ୍ସବ ଦିନ ଏକାଡେମୀ ବନ୍ଦ ହେଉଥିଲା । ପରେ କୌଣସି କାରଣରୁ ବନ୍ଦ ନ ହେବାରୁ ସେଓ ଦିନେ କ୍ଷୋଭ ପ୍ରକାଶ କରୁଥିବାର ଶୁଣିଥିଲୁଁ । କିନ୍ତୁ ପ୍ୟାରୀମୋହନଙ୍କ ଏକାଡେମୀ ପ୍ରତି ସେଓଙ୍କର ଚିରସ୍ନେହ ଥିଲା । ଟାଉନ୍ ସ୍କୁଲ ଅରେ ଏଣ୍ଟ୍ରାନ୍ସ ସ୍କୁଲରେ ପରିଣତ ହୋଇ ପ୍ରଥମ ଓ ୨ୟ ଶ୍ରେଣୀ ଏକାଡେମୀରେ ସମ୍ମିଳିତ ହୋଇ ଯାଇଥିଲା । ପରେ ପୁଣି ଏଣ୍ଟ୍ରାନ୍ସ ସ୍କୁଲକୁ ଉନ୍ନୀତ ହୋଇଅଛି ।

ପ୍ୟାରୀମୋହନଙ୍କ ଜୀବିତ କାଳରେ ଓ ପ୍ରାଣାନ୍ତେ ତାଙ୍କ ପ୍ରତି ମଧୁସୂଦନ ଚିରକାଳ ଗଭୀର ପ୍ରୀତି ପୋଷଣ କରୁଥିଲେ । ବସନ୍ତଗାଥାରେ କବି ସଖାଙ୍କ ପ୍ରତି ତାଙ୍କର ମନୋଭାବ ପ୍ରକାଶ କରି ଅଛନ୍ତି । ଅଲୌକିକ ସ୍ୱାର୍ଥତ୍ୟାଗ ପୂର୍ବକ ପ୍ୟାରୀମୋହନ ଏକାଡେମୀ ଚଳାଉଥିଲେ । ତାଙ୍କର ଅକାଳ ମୃତ୍ୟୁରେ ଏକାଡେମୀ ଅରକ୍ଷିତ ହେଲା । ତତ୍ପୂର୍ବରୁ ସ୍ୱୀୟ ଅପ୍ରିୟ ସ୍ପଷ୍ଟବାଦିତାବଶତଃ ପ୍ୟାରୀମୋହନଙ୍କ ସହିତ ଇନ୍ସପେକ୍ଟର ରାଧାନାଥଙ୍କର ମନୋମାଳିନ୍ୟ ହୋଇଥିଲା । କିନ୍ତୁ ଅକପଟ ସ୍ୱାର୍ଥତ୍ୟାଗ କେବେହେଁ ବୃଥା ହୁଏନାହିଁ । ପରମ ସ୍ନେହପାତ୍ର ମଧୁସୂଦନଙ୍କ ପୁଣ୍ୟ ପ୍ରବର୍ତ୍ତନାରେ ଉଦାରଚେତା ରାଧାନାଥ ସର୍ବପ୍ରକାର ମନୋ-ମାଳିନ୍ୟ ପରିତ୍ୟାଗ କରି ଏପରି ରିପୋର୍ଟ କଲେ ଯେ ତଦ୍ଦ୍ୱାରା ଏକାଡେମୀ ସରକାରୀ ସାହାଯ୍ୟ ପାଇଲା ଏବଂ ଆଜି ପର୍ଯ୍ୟନ୍ତ ପାଇ ଦିନକୁ ଦିନ ବର୍ଦ୍ଧିଷ୍ଣୁ ହୋଇ ବର୍ତ୍ତମାନଅବସ୍ଥା ପ୍ରାପ୍ତ ହୋଇଅଛି ।

ଟାଉନ୍ ସ୍କୁଲକୁ ମଧୁସୂଦନ ବହୁ ଯତ୍ନ ଓ ସ୍ୱାର୍ଥତ୍ୟାଗ ପୂର୍ବକ ରକ୍ଷା କରି ଶେଷରେ ତାହାକୁ ଏଣ୍ଟ୍ରାନ୍ସ ସ୍କୁଲରେ ପରିଣତ କଲେ ଏବଂ ଜରାଜୀର୍ଣ୍ଣ ରୁଗ୍ଣ ଶରୀରରେ ନାନା ସ୍ଥାନ ପରିଭ୍ରମଣ ପୂର୍ବକ ଅର୍ଥ ସଂଗ୍ରହ କରି ଏବଂ ନିଜେ ଅନେକ ଅର୍ଥ ଦାନ କରି ବିଦ୍ୟାଳୟର ଗୋଟିଏ ସୁନ୍ଦର ଅଟ୍ଟାଳିକା ନିର୍ମାଣ କରାଇ ଦେଇ-ଅଛନ୍ତି । ସେ ଅନେକ ସମୟରେ ନାନା କାର୍ଯ୍ୟ ମଧ୍ୟରେ ଏହି ବିଦ୍ୟାଳୟ ପରିଦର୍ଶନ କରୁଥିଲେ ଏବଂ ଅନେକ ସମୟରେ ନିଜେ ଶିକ୍ଷା ଦେଇ ଶିକ୍ଷକମାନଙ୍କୁ ଆଦର୍ଶ ପ୍ରଦର୍ଶନ ପୂର୍ବକ ଛାତ୍ରବୃନ୍ଦର ମହୋପକାର ସାଧନ କରୁଥିଲେ । ଈଶ୍ୱରାଧନା, ଧର୍ମୋପଦେଶ ପ୍ରଦାନ ନୈତିକ ଗଳ୍ପ କଥନ ପୂର୍ବକ ନୀତିଶିକ୍ଷା ପ୍ରଦାନ, ବହୁ ଛାତ୍ରଙ୍କୁ ଅବୈତନିକ ଭାବରେ ଶିକ୍ଷା ପ୍ରଦାନ ଏହି ବିଦ୍ୟାଳୟର ବିଶେଷତ୍ୱ । ସରକାରୀ ସାହାଯ୍ୟ ନେଲେ ସରକାରୀ ନିୟମର ଜଟା ଜାଲରେ ଆବଦ୍ଧ ହୋଇ ଉକ୍ତ କାର୍ଯ୍ୟଗୁଡ଼ିକ ବନ୍ଦ କରିବାକୁ ହେବ, ଏହି ଭୟରେ ସେ ସରକାରୀ ସାହାଯ୍ୟ ନେଉ ନ ଥିଲେ ।

ବହୁ ସମ୍ପ୍ରଦାୟପୂର୍ଣ୍ଣ ଭାରତରେ ନ୍ୟାୟଶୀଳ ଇଂରେଜ ରାଜ ନିରପେକ୍ଷ ନୀତି ( Neutral Policy ) ଅବଲମ୍ବନ କରିବାକୁ ବାଧ୍ୟ ହୋଇଅଛନ୍ତି, ତାହା ଉତ୍ତମ ହୋଇଅଛି । ସରକାରୀ ବିଦ୍ୟାଳୟରେ ଧର୍ମଶିକ୍ଷାର ଉପାୟ ନାହିଁ, ଅର୍ଥ ଲୋଭରେ ପଡ଼ି ରାଜା ମହାରାଜା ମଧ୍ୟ ସରକାରୀ ସାହାଯ୍ୟ ଲୋଡ଼ି ଏହି ନିୟମର ନିଗଡ଼ ଅଜ୍ଞାତସାରେ ଗ୍ରହଣ କରୁଅଛନ୍ତି—ସେମାନଙ୍କର ତାହାର ପ୍ରୟୋଜନ ନାହିଁ । ଏପରି ସ୍ଥଳରେ ଜଣେ ଉଚ୍ଚ କର୍ମଚାରୀ ବାରମ୍ବାର ପ୍ରାର୍ଥିତ ହୋଇ ମଧ୍ୟ ସରକାରୀ ସାହାଯ୍ୟ ନ ନେବାର କି ଅପୂର୍ବ ଆଦର୍ଶ । ଏହି ଉଚ୍ଚ ଆଦର୍ଶ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲ ପ୍ରଥମେ ପ୍ରଦର୍ଶନ କରିଅଛି । ଧନ୍ୟ ମଧୁସୂଦନ । ଏହି ସ୍କୁଲ ସମ୍ପର୍କରେ ଗୋଟିଏ ଛାତ୍ରାବାସ ଓ କ୍ରୀଡ଼ାଭୂମି ସ୍ଥାପନ କରିବା ତାଙ୍କର ଅଭିପ୍ରେତ ଥିଲା । ଦେଶବାସୀ ବା ତାଙ୍କର ସୁଯୋଗ୍ୟ ଭ୍ରାତା ଓ ପୁତ୍ରମାନେ ତାହା କରିବେ କି ?

ରେଭେନ୍‌ସା ହିନ୍ଦୁ ବାଳିକା ବିଦ୍ୟାଳୟ ଓ ରେବା ରାୟଙ୍କ ଆଦର୍ଶ ବାଳିକା ବିଦ୍ୟାଳୟରେ ମଧୁସୂଦନ ଯଥାସାଧ୍ୟ ସାହାଯ୍ୟ ଦାନ କରିଥିଲେ । ବିଦ୍ୟାଳୟ ସ୍ଥାପନ ସହି ସାମୟିକ ପତ୍ରିକାର ପ୍ରବର୍ତ୍ତନ, ପୁସ୍ତକ ପ୍ରଣୟନ ଓ ମଫସଲ ଗସ୍ତ ସମୟରେ ନାନା ଉପଦେଶ ପ୍ରଦାନ ଦ୍ୱାରା ମଧୁସୂଦନ ଶିକ୍ଷା ବିସ୍ତାରରେ ସାହାଯ୍ୟ କରିଅଛନ୍ତି । ବିଦ୍ୟାଳୟର ବହୁ ପୁସ୍ତକ ତାଙ୍କଦ୍ୱାରା ବା ତଦୀୟ ତତ୍ତ୍ୱାବଧାନରେ ପ୍ରଣୀତ ହୋଇଅଛି । ନାନା ସାମୟିକ ପତ୍ରିକା ତାଙ୍କ ପ୍ରବର୍ତ୍ତିନା ବା ସହାୟତାରେ ପ୍ରକାଶିତ ହୋଇଥିଲା ।

ପାରିବାରିକ ଧର୍ମପାଳନ ଓ ଅତିଥି ସତ୍କାର—ମାନବ ଶକ୍ତି ଶାନ୍ତି । ତାହା ବହୁ ସ୍ଥଳରେ ନିୟୋଜିତ ହୋଇପାରେ ନାହିଁ । ମଧୁସୂଦନ ଜାଗ୍ରତ ଗୃହାଶ୍ରମୀ । ପୁତ୍ରକନ୍ୟାମାନଙ୍କ ଚରିତ୍ର ଗଠନରେ ପିତାଙ୍କର ହସ୍ତମୁଦ୍ରା ସୁସ୍ପଷ୍ଟ । ସନ୍ତାନମାନଙ୍କୁ ବିଦ୍ୟାଳୟକୁ ପଠାଇ ନିଶ୍ଚିନ୍ତ ନ ହୋଇ ସେ ନିଜେ ଶିକ୍ଷା ଦେଉଥିଲେ । ପରିବାରକୁ ଯେପରି ନିୟମିତ ଉପାସନା କରୁଥିଲେ । ଅନେକ ଥର ରବିବା ୯ ଘଣ୍ଟା ସମୟରେ ଦେଖା କରିବାକୁ ଯାଇ ବନ୍ଧୁମାନଙ୍କୁ ବାହାରରୁ ଗମ୍ଭୀର ବ୍ରହ୍ମୋପାସନା ବା ମଧୁର ବ୍ରହ୍ମ ସଙ୍ଗୀତ ଶୁଣି ପ୍ରତ୍ୟାଗତ ହେବାକୁ ହେଉଥିଲା । ପୁତ୍ର କନ୍ୟାମାନଙ୍କ ଶିକ୍ଷାରେ ଅଜସ୍ର ଅର୍ଥବ୍ୟୟ କରିବାକୁ ସେ କଦାପି କୁଣ୍ଠା ପ୍ରକାଶ କରୁ ନ ଥିଲେ । ତାହାର ଫଳ ଫଳିଅଛି । ସୁନ୍ଦର ବ୍ରାହ୍ମ-ପରିବାର ଧାରା ଉତ୍କଳରେ ପ୍ରବାହିତା ହେଉଛି—"ପବିତ୍ର ସଲିଳା ଯେସନ୍ତେ ରେବା ସରସ୍ୱତୀ ।" ଉତ୍କଳର ଜଣେ ପ୍ରଧାନ ନାରୀ କବି ଏହି ବଂଶରେ ଜନ୍ମଗ୍ରହଣ କରି-ଅଛନ୍ତି । ଭ୍ରାତୃସ୍ନେହ, ସନ୍ତାନ ବାତ୍ସଲ୍ୟ, ପିତୃମାତୃ ଭକ୍ତି, ଏକପତ୍ନୀ ବ୍ରତ, ଭୃତ୍ୟ-

ବାସ୍ତବିକ ସବୁ ବିଷୟରେ ସେଓ ପରିବାର ଆଦର୍ଶ ସ୍ଥାନୀୟ । କେତେ ଚିତ୍ତ ହୃଦୟକୁ ପବିତ୍ର କରେ ।

ଘନକର କଥା ହେଉ । ଘନେ ବୃଦ୍ଧ ଜଗୁ ସମ୍ମୁଖରେ ବାରୁ ହାତ ଯୋଡ଼ି କହୁଅଛନ୍ତି, "ଜଗୁ ! ତୁମେ ବୟସରେ ବଡ଼ । କାର୍ଯ୍ୟରେ ହେଳା କରିଥିବାରୁ ରାଗି ଯାଇ ଗାଳି ଦେଲି । ତୁମ ମନରେ କଷ୍ଟ ହୋଇଥିବ । ତୁମେ ମତେ କ୍ଷମା ଦିଅ ।" ଜଗୁ ତ ନୀରବ । ଏ କି କଥା ! ମୋର ତ ଭୁଲ, ଗାଳି ଦେଲେ ତ କ'ଣ ହେଲା ? କିନ୍ତୁ ତାହା କହିଲେ କିଣ ହେବ, କାମ କଲେ ତ ଭୁଲ ହୁଏ । ଗାଳି ଦେବା ଯେ ଅନ୍ୟାୟ । ଜଗୁ ! ମତେ କ୍ଷମା ଦେବାକୁ ହେବ । ହାୟ ! ଏ ସଂସାରରେ ସ୍ୱର୍ଗର ଚିତ୍ର କିଏ ଦେଖାଇଲା ? ଏ ଯେ କଳ୍ପିତ ସ୍ୱର୍ଗୀୟ ଚିତ୍ରବତ୍ ପ୍ରତୀୟମାନ ହୁଏ । ଦସ୍ତିର, ଚପରାସି, ଚଉକିଦାର, ମେହେନ୍ତର ପରିବର୍ତ୍ତେ ଭୃତ୍ୟମାନଙ୍କୁ ସେ ନାମ ଧରି ଡାକୁଥିଲେ । ଦୋଷ ଦେଖି ଜରିମାନା କରି ଅନେକ ସମୟରେ ତାହା ହାତରୁ ଦେଉଥିଲେ । ଦାନ ଦେଲେ କର୍ମଚାରୀଙ୍କ ମନରେ କଷ୍ଟ ହେବ ବୋଲି ଧାରି ଦେଇ ପାଯୋରି ପକାଉଥିଲେ । କି ଆଦର୍ଶ ! Plain living high thinking ତାଙ୍କ ଜୀବନରେ ସୁନ୍ଦର ରୂପେ ପ୍ରଦର୍ଶିତ ହେଉଥିଲା । ସେ ନିଜେ ପକ୍ଷୀର ଆହାର କରୁଥିଲେ । ତାଙ୍କ ଗୃହ ସର୍ବଦା ଅବାରିତ-ଦ୍ୱାର ଥିଲା । କଲିକତା ପ୍ରଭୃତି ନାନା ସ୍ଥାନରୁ ଅତିଥି ଆସି ସେଓ ପରିବାରକୁ ଜନକ ରାଜର୍ଷିଙ୍କ ତପୋବନ ମଠପ୍ରକୃତି ମଣି ତହିଁରେ ଆଶ୍ରୟ ନେଉଥିଲେ । ଅତିଥିସେବା ଓ ଦାନ ନିମିତ୍ତ ଋଣଗ୍ରସ୍ତ ହୋଇ ମଧ୍ୟ ସେଓ ଏହି ଧର୍ମ ପାଳନ କରିଥିଲେ ।

**ସମାଜ ସଂସ୍କାର**—ମଧୁସୂଦନ ଉଦ୍ଦାମ ମୂଳୋତ୍ପାଟକ ବିପ୍ଳବକାଙ୍କ୍ଷୀ ନ ଥିଲେ, ଅଥବା ଅନ୍ଧ ବନ୍ଧନକାଙ୍କ୍ଷୀ ଉଭୟ କୁଳରକ୍ଷାକାଙ୍କ୍ଷୀ ନ ଥିଲେ । ସେ ଯାହା ସତ୍ୟ ବୁଝିଥିଲେ, ତାହା ଧ୍ରୁବରୂପେ, ଦୃଢ଼ରୂପେ ପ୍ରାଣରେ ଧାରଣପୂର୍ବକ କାର୍ଯ୍ୟରେ ପରିଣତ କରୁଥିଲେ । ବେଳେ ବେଳେ ଆବଶ୍ୟକ ହେଲେ ସିଂହ ବିକ୍ରମରେ ସ୍ୱୀୟ ଅନ୍ତର୍ନିହିତ ଉତ୍ସାହ, ବିଶ୍ୱାସ, ସଂସ୍କାର ବୁଦ୍ଧି ବିଷୟରେ ସାକ୍ଷ ପ୍ରଦାନ କରୁଥିଲେ । ପରନ୍ତୁ କାହାରି ମନରେ କଦାପି ବୃଥା କଷ୍ଟ ଦେଉ ନ ଥିଲେ । ମହମ୍ମଦଙ୍କ ତେଜ ଏବଂ ଈଶାଙ୍କ କୋମଳତା ତାଙ୍କଠାରେ ଏକାଧାରରେ ସନ୍ନିବିଷ୍ଟ ଥିଲା । ସ୍ଥୂଳତଃ ଆରିଷ୍ଟଟଲ୍‌ଙ୍କ ସୁବର୍ଣ୍ଣ ପନ୍ଥାକୁ ( Aristotle's Golden mean ) ସେ ଜୀବନରେ ଅଙ୍ଗୀଭୂତ କରିଥିଲେ ।

ଥରେ ଜଣେ ଉତ୍ସାହୀ ଯୁବକ କହିଲେ, ଉଭୟଙ୍କର ଦେଶୀୟତାର ପ୍ରତିକାର ସ୍ୱରୂପ ଉଭୟଙ୍କର ବୈଦେଶିକତା ସଂସ୍ଥାପନ କଲେ ପରିଣାମରେ ସାମଞ୍ଜସ୍ୟ ଆସିବ ।

ସତ୍ୟ ମହୋଦୟ ଧୀରଭାବରେ କହିଲେ, "ସତ୍ୟର ଜୟ ଅବଶ୍ୟମ୍ଭାବୀ । ଯାହା ପ୍ରକୃତ ଲକ୍ଷ୍ୟ, ତାହାର ହିଁ ପ୍ରତିଷ୍ଠା କର । ଅଧିକ ନୁହେ, କି ଅଳପ ନୁହେ ।" ସେ ସଂସ୍କାରକମାନଙ୍କ ବୃଥା ଉଚ୍ଛୃଙ୍ଖଳତା ପ୍ରତାଡ଼ିତ ହୋଇ ଲୋକଙ୍କ ପ୍ରାଣରେ ଆଘାତ ଦେବାର ପକ୍ଷପାତୀ ନ ଥିଲେ । ଯାହା ସ୍ୱଦେଶର ସାର ଓ ସୁନ୍ଦର, ତାହା ରକ୍ଷଣ କର । ଯାହା ବିଦେଶର ସାର, ଗ୍ରହଣୀୟ, ଆଦର୍ଶ, ତାହା ଗ୍ରହଣ କର । ଖ୍ରୀଷ୍ଟଙ୍କ ସରଳ ଧର୍ମଜୀବନକୁ ସେ ଶ୍ରେଷ୍ଠ ମଣୁଥିଲେ । ସ୍ୱଦେଶର ହେଲେ ମଧ୍ୟ ଶ୍ରୀକୃଷ୍ଣଙ୍କର ଗୋଲମାଳିଆ ବୈଷ୍ଣବୀୟ ଆଦର୍ଶ ବିଷୟରେ ସ୍ୱୀୟ କଥୋପକଥନ ବା ରଚନାଦିରେ ରୁଷ୍ଟୀଭାବ ଅବଲମ୍ବନ କରି ଯାଇଅଛନ୍ତି । ଯାହା ନୈତିକ ଭାବରେ ଅସୁନ୍ଦର, ତାହା କାବ୍ୟକଳା ହିସାବରେ ଯେତେ ସୁନ୍ଦର ହେଉ ପଛକେ ସେ ତାହାର ଆଶ୍ରୟ କଦାପି ଗ୍ରହଣ କରିନାହାନ୍ତି । ତାହା ବିଷବତ୍ ପରିତ୍ୟାଗ କରି-ଅଛନ୍ତି । ତାଙ୍କର ସମାଜସଂସ୍କାରର ଏହି ଆଦର୍ଶର ଫଳ ଫଳିଅଛି । × × ×

ସେ ଅନେକ ସମୟରେ କହୁଥିଲେ, "Life is never barren"—"Life begets life". ଜୀବନ ବୃଥା ନଷ୍ଟ ହୁଏନାହିଁ । ଜୀବନରୁ ଜୀବନର ଉତ୍ପତ୍ତି ହୁଏ । ମାନବଜୀବନର ଗାମ୍ଭୀର୍ଯ୍ୟ, ମହା ମୂଲ୍ୟତା, ଦାୟିତ୍ୱ ସେ ସର୍ବଦା ଜାଗ୍ରତ ଭାବରେ ଉପଲବ୍ଧି କରୁଥିଲେ । ତଦୀୟ "ଜୀବନ ଚିନ୍ତା"ର ପ୍ରଥମରେ ଅଛି—

"ରେ ଆତ୍ମନ୍ ! ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ କରି କରି ନିରୀକ୍ଷଣ,
ନିଃଶବ୍ଦେ ଜୀବନ ସ୍ରୋତ ଧାଉଁଛି କପରି
ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ ।"

ସଙ୍ଗୀତମାଳାର ପ୍ରଥମରେ ଅଛି—

"ଏ ଜୀବନ ନୁହେ ବୃଥା ଖେଳା,
ଚିନ୍ତାରେ ବହନ ଗଲା ବେଳା,
ସ୍ରୋତ ନିମେଷରେ ଯାଉଅଛି ଚାଲି
ଧରି ରେ ନ କରି ଲବେ ହେଳା ।"

ମହାତ୍ମାଙ୍କର ଜୀବନ ବୃଥା ହୁଏନାହିଁ । ଏ ଜଗତରେ କିଛି ନଷ୍ଟ ହୁଏ ନାହିଁ । ବିଦ୍ୟାଳୟର ଛାତ୍ରମାନେ ପଢ଼ନ୍ତି—Matter is Indestructible, ପ୍ରାଣ, ମନ, ଆତ୍ମା ତ ଉଚ୍ଚତର ଶ୍ରେଷ୍ଠତର ସୃଷ୍ଟି, ତାହା କିପରି ନଷ୍ଟ ହେବ ? ମହାପ୍ରାଣ ମଧୁସୂଦନଙ୍କ ଜୀବନ ଫଳବାନ୍ ହୋଇଅଛି ଓ ହେବ । ସେ ଅନେକ ସମୟରେ କ୍ଷୋଭ ପ୍ରକାଶ କରୁଥିଲେ, "ଓଡ଼ିଆମାନେ ବୁଝିଁବେ ସ୍ୱୀନ . ନୁହନ୍ତି,

ଏହା ମୋର ଦୃଢ଼ ବିଶ୍ୱାସ, ମୁଁ ଏ ବିଷୟରେ ଅକୁଣ୍ଠିତ ସାକ୍ଷ୍ୟ ଦେଇ ପାରେ। କିନ୍ତୁ ମୋର ମନେହୁଏ, ଉତ୍କଳରେ ସେପରି କୌଣସି ଧର୍ମପ୍ରାଣ ମହାପୁରୁଷଙ୍କ ଆବିର୍ଭାବ ହୋଇନାହିଁ।" "ପଞ୍ଚସଖା"ଙ୍କ ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଜଗନ୍ନାଥ, ବଳରାମ କଥା ଶୁଣି କହିଥିଲେ, "ସେମାନଙ୍କ ମଧ୍ୟରୁ କେହି ସର୍ବ-ଜନସମ୍ମତ, ସର୍ବଜ ସ୍ୱୀକୃତ, ଆଦର୍ଶ ରୂପେ ଗୃହୀତ ମହାପୁରୁଷ ଓ ମହାଗୁରୁ ରୂପେ ସ୍ୱୀକୃତ ହୋଇଅଛନ୍ତି କି ?" ଶ୍ରୀଚୈତନ୍ୟ ଓ ବ୍ରହ୍ମାନନ୍ଦ ସ୍ୱାମୀ ଓଡ଼ିଆ ବୋଲି ସର୍ବଜ ସ୍ୱୀକୃତ ନୁହନ୍ତି। ଏପରି ମହାପୁରୁଷଙ୍କ ଆବିର୍ଭାବ ଉତ୍କଳରେ କେବେ ହେବ ?

ତତ୍ପରେ ଉତ୍କଳର ଯୁବକମଣ୍ଡଳୀ—ପ୍ରଥମେ ଯେଉଁ ଇଂରାଜୀ ଶିକ୍ଷିତ ଦଳ ବାହାରିଥିଲେ, ବଙ୍ଗଦେଶ ପରି ଏଠାରେ ମଧ୍ୟ ସେମାନେ ବର୍ତ୍ତମାନ ଦଳ ଅପେକ୍ଷା ବିଦ୍ୟା ବୁଦ୍ଧି ଯଶରେ ଶ୍ରେଷ୍ଠ ହେଲେହେଁ କେତେକଙ୍କର ଚରିତ୍ର ଦୋଷ ଓ ପାନଦୋଷ ଥିଲା ବୋଲି ଶୁଣାଯାଏ। ଚରିତ୍ରଦୋଷ ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତ ଓ ପାନ ଦୋଷ ବିଦେଶାଗତ। କିନ୍ତୁ ଆଧୁନିକ ଦଳ ସେ ଦୋଷ ରହିତ ବୋଲି କାହାର କାହାର ମତ। ଗୋପବନ୍ଧୁ ଦାଶ ପ୍ରମୁଖ ଯୁବକମଣ୍ଡଳୀ ଉତ୍କଳରେ ନବଯୁଗର, ନବଜୀବନର ସୂତ୍ରପାତ ଓ ସୂଚନା କରିଅଛନ୍ତି। ଜୀବନର କାର୍ଯ୍ୟର ଫଳ ବହୁଦୂର ବିସ୍ତୃତହୁଏ, କେଉଁ ସୂତ୍ରରେ ଭଗବାନ୍ କି କାର୍ଯ୍ୟ ସାଧନ କରନ୍ତି, କିଏ ଜାଣେ ? ମଧୁସୂଦନଙ୍କ ସୁରୁଚିସମ୍ପନ୍ନ ଗଦ୍ୟପଦ୍ୟମୟ ସାହିତ୍ୟ ଓ ତାଙ୍କର ଦୀର୍ଘକାଳବ୍ୟାପୀ ଶିକ୍ଷକ ଜୀବନ କି ଏହି ଯୁବକମଣ୍ଡଳୀ ଭିତରେ ଏହି ନବଜୀବନର, ନବଯୁଗର ସୂଚନାରେ କିଛି କାର୍ଯ୍ୟ କରି ନାହିଁ ? ସେ ଆଧୁନିକ ଉତ୍କଳର ଗୁରୁ। ଅନୁସନ୍ଧାନ କଲେ ଦେଖାଯିବ, ପ୍ରତ୍ୟେକ ଉତ୍କଳୀୟ ଯୁବକଙ୍କ ପ୍ରାଣରେ ତାଙ୍କର ଉତ୍ସାହ ଓ ଆଦର୍ଶ କାର୍ଯ୍ୟ କରୁଅଛି।

**ଜ୍ଞାନାର୍ଜନ :**

ଅତି ଶୈଶବକାଳରୁ ମଧୁସୂଦନଙ୍କ ପ୍ରତିଭା ପ୍ରତିଭାତ ହୋଇଥିଲା। ସେ ଥରେ ସଗର୍ବରେ କହୁଥିଲେ, "ମଧୁସୂଦନ ତାହା ଜୀବନରେ ବର୍ଣ୍ଣାଶୁଦ୍ଧି କରି ନାହିଁ କିମ୍ବା ଦୈନିକ ପାଠ ପ୍ରସ୍ତୁତ ନ କରି ଶ୍ରେଣୀରେ ଅପ୍ରସ୍ତୁତ ହୋଇନାହିଁ।" ପ୍ରଥମେ ଯେବେ ରାଧାନାଥଙ୍କ ସଙ୍ଗେ ମିଳନ ହେଲା, ତାହା ତାଙ୍କ ଜୀବନର ଶୁଭ ମୁହୂର୍ତ୍ତ। ରାଧାନାଥ ପୁରୀ ଜିଲ୍ଲା ସ୍କୁଲର ଶିକ୍ଷକ, ମଧୁସୂଦନ ପ୍ରଥମ ଶ୍ରେଣୀର ଛାତ୍ର, ମଣିକାଞ୍ଚନର ସଂଯୋଗ ହେଲା। ଦିନେ ପଣ୍ଡିତ ମଧୁବାବୁଙ୍କୁ ଦେଖିବାକୁ ଯାଇ ରାଧାନାଥ ତାଙ୍କ ସହିତ କଥାବାର୍ତ୍ତା କରି ପୂର୍ବବତ୍ "ଆପଣ" ବ୍ୟବହାର କରୁଥିଲେ। ମଧୁସୂଦନ କହିଲେ, "ମୋତେ ଆପଣଙ୍କର 'ଆପଣ' କହିବା

ଅସୁନ୍ଦର । ଆପଣ ଏହା ଗ୍ରହଣ୍ଡୁ ।" ଯେଉଁ ରାଧାନାଥ ୮ମ ଶ୍ରେଣୀର ଛାତ୍ରଙ୍କୁ ମଧ୍ୟ "ଆପଣ" କହୁଥିଲେ, ସେ ସେହି ଦିନରୁ "ମଧୁ, ତୁମ୍ଭେ" ଆରମ୍ଭ କଲେ ।

ଦିନେ ରାଧାନାଥ ପଚାରିଲେ, "ମଧୁ, ଏପରି ସୁନ୍ଦର ଇଂରାଜୀ କପରି ଶିଖିଲ ?" ଅନୁସନ୍ଧାନ କରି ଜାଣିଲେ ଯେ ତତ୍ପୂର୍ବରୁ ସମସ୍ତ ପ୍ରବେଶିକା ପରୀକ୍ଷା ପାଠ୍ୟ ଇଂରାଜୀ ପୁସ୍ତକଗୁଡ଼ିକ ମଧୁସୂଦନ ପଢ଼ିସାରିଥିଲେ । ଏହି ଇଂରାଜୀ ରଚନାରେ ରାଧାନାଥ ଏପରି ସନ୍ତୁଷ୍ଟ ହୋଇଥିଲେ ଯେ ପରବର୍ତ୍ତୀକାଳରେ କର୍ମକ୍ଷେତ୍ରରେ ଅଧିକାଂଶ ପ୍ରାଦେଶିକ ରିପୋର୍ଟର ଡ୍ରାଫ୍ଟ ମଧୁସୂଦନଙ୍କଦ୍ୱାରା କରାଇ ନେଇଥିଲେ ଏବଂ ସ୍ୱୀୟ ପ୍ରାଦେଶିକ ରିପୋର୍ଟରେ ମଧୁସୂଦନଙ୍କ ଜିଲ୍ଲା ରିପୋର୍ଟର ଉତ୍କୃଷ୍ଟ ଅଂଶମାନ ଉଦ୍ଧାରପୂର୍ବକ କର୍ତ୍ତୃପକ୍ଷଙ୍କ ଦୃଷ୍ଟି ମଧୁସୂଦନଙ୍କ ଅସାଧାରଣ ଯୋଗ୍ୟତା ଓ ଦକ୍ଷତା ପ୍ରତି ଆକର୍ଷଣ କରୁଥିଲେ ।

ମଧୁସୂଦନ କଟକ କଲେଜରୁ ଏଫ୍. ଏ. ପାଶ୍ କରି ମାସିକ ଟ ୨୦ ଙ୍କା ବୃତ୍ତି ଲାଭ କରିଥିଲେ । କିନ୍ତୁ ତାଙ୍କର ପିତା କଲିକତା ଯାଇ ବି. ଏ ପଢ଼ିବାକୁ ଛାଡ଼ି ନ ଦେବାରୁ ଛାତ୍ରଜୀବନ ସେହିଠାରୁ ସାଙ୍ଗ ହେଲା । ସେ ପରବର୍ତ୍ତୀକାଳରେ କ୍ଷୋଭ ପ୍ରକାଶ କରି ଅନେକଥର କହୁଥିଲେ, ମୁଁ ଯେବେ କଲିକତା ଯାଇଥାନ୍ତି, ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଉପାଧି ସଙ୍ଗେ ସଙ୍ଗେ କର୍ମମଗ୍ନ ଭାରତ ରାଜଧାନୀର ଉତ୍ସାହ, କର୍ମଠତା, ସଂସର୍ଗ ଓ ସଦୃଷ୍ଟାନ୍ତ ଅନୁକରଣ କରି, ବିଶେଷତଃ ମହର୍ଷି ଦେବେନ୍ଦ୍ରନାଥ ଓ କେଶବଚନ୍ଦ୍ରଙ୍କ ସାନ୍ନିଧ୍ୟ ଲାଭକରି ଜୀବନକୁ ବଡ଼ କରି ପାରିଥାନ୍ତି ।" କିନ୍ତୁ ଛାତ୍ର ଜୀବନ ଶେଷ ହେବା ସଙ୍ଗେ ସଙ୍ଗେ ତାଙ୍କର ପ୍ରକୃତ ଗ୍ରନ୍ଥାଧ୍ୟୟନ ଓ ଜ୍ଞାନାର୍ଜନ ଆରମ୍ଭ ହେଲା । ପ୍ରତିଭାଶାଳୀ, ସୁପଣ୍ଡିତ, ଜ୍ଞାନଲିପ୍ସୁ ରାଧାନାଥଙ୍କ ସଙ୍ଗେ ମିଳି ଇଂରାଜୀ, ସଂସ୍କୃତ, ବଙ୍ଗଳା, ଓଡ଼ିଆରେ ରତ୍ନମାନ ଲାଭ କଲେ । ଅଧ୍ୟୟନାଧିକ୍ୟଯୋଗୁଁ ତାଙ୍କ ଚକ୍ଷୁର ଜ୍ୟୋତିର କିଞ୍ଚିତ୍ ହ୍ରାସ ହୋଇଥିଲେ ମଧ୍ୟ ଅଧ୍ୟୟନ ତୃଷ୍ଣାଦମିତ ହୋଇ ନ ଥିଲା । ତାଙ୍କର ଅଧ୍ୟୟନ ରୀତି ସମାଲୋଚନମୂଳକ ଥିଲା । ଯାହା ପାଉଥିଲେ, ତାହା ପଢ଼ୁ ନ ଥିଲେ, ବାଛି ବାଛି ସାର ଗ୍ରନ୍ଥମାନ ପଢ଼ୁଥିଲେ ।

ସାହିତ୍ୟ, ଗଣିତ, ଭାଷାତତ୍ତ୍ୱ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ, ଅଧ୍ୟାପନାପଦ୍ଧତି ଓ ଶିକ୍ଷାବିଷୟକ ଗ୍ରନ୍ଥମାନ ଗଭୀର ଅଭିନିବେଶ ସହକାରେ ଅଧ୍ୟୟନ କରିଥିଲେ । କିନ୍ତୁ ତାଙ୍କର ସର୍ବଶ୍ରେଷ୍ଠ ଆଦରର ଧନ ଥିଲା ଧର୍ମଗ୍ରନ୍ଥ । ଉପନିଷଦ୍, ବାଇବେଲ, ପଞ୍ଚଦଶୀ, ମାର୍ଟିନୋ, ଥିଓଡ଼ର ପାର୍କର, ନିଉମାନ, କେଶବଚନ୍ଦ୍ର, ଦେବେନ୍ଦ୍ରନାଥ, ରାମମୋହନଙ୍କ ଲେଖାବଳୀ ତାଙ୍କର ବଡ଼ ପ୍ରିୟ ଥିଲା । ଟେନିସନ୍, କାଳିଦାସ ଭବଭୂତି, ଡାଇଡ଼େନ୍ସ, ସେକ୍ସପିଅର ପ୍ରଭୃତି ତାହା ତଳେ ସ୍ଥାନ ପାଇଥିଲା ।

ସାହିତ୍ୟ ସେବା—ଏତେ ଅଳ୍ପସ୍ୱନାସକ୍ତ ହେଲେହେଁ ସେ ହୃଦୟର ଶ୍ରେଷ୍ଠ ଭାବରାଶିକୁ ମାତୃଭାଷାରେ ପୁନର୍ଜୀବନ ଦାନପୂର୍ବକ ପ୍ରଦେଶୀୟ ସାହିତ୍ୟ ସୃଷ୍ଟି କରିବାରେ ତ୍ରୁଟି କରି ନ ଥିଲେ । ରାଜକାର୍ଯ୍ୟ, ପାରିବାରିକ, ସାମାଜିକ ନାନା କାର୍ଯ୍ୟରେ ବ୍ୟାପୃତ ଥିବାରୁ ଯଥେଷ୍ଟ ଲେଖିପାରୁ ନ ଥିଲେହେଁ ତାଙ୍କର ଅଧୀତ ଗ୍ରନ୍ଥ ପରି ତାଙ୍କର ରଚନା ମଧ୍ୟ ଟୁଙ୍କା ଛଙ୍କା । ଅନର୍ଗଳ, ଅବାରିତ ଲେଖକ ହେବାକୁ ସେ ପସନ୍ଦ କରୁ ନ ଥିବା ପରି ବୋଧ ହୁଏ । ବାସ୍ତବିକ ସେକ୍ସପିଅର, ରବୀନ୍ଦ୍ରନାଥ ବହୁ ସାରବାନ୍ ଗ୍ରନ୍ଥ ଲେଖିଅଛନ୍ତି ସତ୍ୟ, କିନ୍ତୁ ତାହା ଅସାଧାରଣ ପ୍ରତିଭାସାପେକ୍ଷ । ଗ୍ରେ, ଲଙ୍ଗ୍‌ଫେଲୋ, ହାମାନ୍‌ସ ପ୍ରଭୃତି ଅତି ଅଳ୍ପ ଲେଖି ମଧ୍ୟ ବଡ଼ ହୋଇଅଛନ୍ତି । ମଧୁସୂଦନ ଯାହା ଲେଖୁଥିଲେ, ତାହା ଅନେକ ଥର ମାଠୁଥିଲେ । ତାଙ୍କର ସୁରୁଚିଗମ୍ଭୀର ରଚନାବଳୀ ସେହି ଯତ୍ନର ଫଳ । ଥରେ କହୁଥିଲେ, "I have the honour to state ଏହି ଗ୍ରନ୍ଥରେ ଅନର୍ଗଳ; ଅବାରିତ କବିତା ଲେଖିବାକୁ ମୁଁ ଅସମର୍ଥ ।"

ସୁକବିତା ରଚନା ପାଇଁ ଅନୁକୂଳ ଅବସ୍ଥା ଲୋଡ଼ା । ଏହି ଭାବଦ୍ୱାରା ପ୍ରଣୋଦିତ ହୋଇ ସେ ଉତ୍କଳକୁ ଅନେକ ଲେଖାରୁ ବଞ୍ଚିତ କଲେ । ନଚେତ୍ କବି ବାଇରନଙ୍କ ପରି ବ୍ୟାଘ୍ର ଝାମ୍ପ ଗତିରେ ଲେଖୁଥିଲେ ଅନେକ ଜିନିଷ ଆମ୍ଭେମାନେ ତାଙ୍କଠାରୁ ପାଇଥାନ୍ତୁ । କବି ବାଇରନ୍ କହୁଥିଲେ, "ବ୍ୟାଘ୍ର ପହିଲୁ ଦଫାରେ ଝାମ୍ପ ମାରେ, ଶିକାର ଯାହା ପଡ଼ିଲା ପଡ଼ିଲା; ମୁଁ ସେହିପରି ପ୍ରଥମେ ଯାହା ଲେଖେ, ତାକୁ ବଦଳାଇବା ମୋର କର୍ମ ନୁହେ ।" କବି ମଧୁସୂଦନ କବି ରାଧାନାଥଙ୍କ ପରି ଏ ଶ୍ରେଣୀର ଲେଖକ ନ ଥିଲେ ।

କବି ମଧୁସୂଦନଙ୍କ ବିଶେଷତ୍ୱ ପ୍ରବନ୍ଧ ଓ ଧର୍ମ ସଙ୍ଗୀତରେ । ତଦୀୟ ପ୍ରବନ୍ଧମାଳା ବହୁକାଳ ପ୍ରତିଦ୍ୱନ୍ଦ୍ୱିହୀନ ହୋଇ ସାହିତ୍ୟ ରାଜ୍ୟରେ ବିରାଜିତ ଥିବ । ଅଚ୍ୟୁତ ଅନନ୍ତ ପ୍ରଭୃତିଙ୍କ ଭଜନ ଛାଡ଼ିଦେଲେ ଉତ୍କଳରେ ସଙ୍ଗୀତବିଳାସର ସାମଗ୍ରୀ ବା ଆଦରସର ଉତ୍ସ ଥିଲା । ଭକ୍ତକବି ମଧୁସୂଦନ ଆଧୁନିକ ଉତ୍କଳରେ ପ୍ରଥମେ ସଙ୍ଗୀତକୁ ବାରନାରୀଆବାସ ଓ ବିକୃତରୁଚି ନାଟ ଆଖଡ଼ାରୁ ବିମୁକ୍ତ କରି ବ୍ରହ୍ମମନ୍ଦିରରେ ସ୍ଥାନ ଦେଇଅଛନ୍ତି । ସାହିତ୍ୟ କ୍ଷେତ୍ରରେ ରୁଚି ପରିବର୍ତ୍ତନ ମଧୁସୂଦନଙ୍କ ଜୀବନର ଆଉ ଗୋଟିଏ ବିଶେଷତ୍ୱ । ରାଧାନାଥ ଭାଷାସଂସ୍କାରକ ସତ୍ୟ, କିନ୍ତୁ ରୁଚିସଂସ୍କାରକ ମଧୁସୂଦନ ଓ ଫକୀରମୋହନ ।

ଅଳ୍ପଦିନ ପୂର୍ବେ ଜଣେ ଉଦୀୟମାନ ଲେଖକ ଓ ସୁକବି ଲେଖିଥିଲେ ଯେ ସେ ସର୍ବଦା ଯେଉଁ ତିନି ଉତ୍କଳୀୟ ଯୁବକମାନଙ୍କ ମୁଖରୁ "ରେ ଆତ୍ମନ୍ ନିଦ୍ରା

ପରିହରି" ପ୍ରଭୃତି ମହାଗମ୍ଭୀର ଭାବସମନ୍ୱିତ ବଚନ ଶୁଣି ବ୍ୟଥିତ ହୁଅନ୍ତି । ସେ ଯୁବକସୁଲଭ ପ୍ରେମସଙ୍ଗୀତ ଶୁଣିବାକୁ ଲୋଡ଼ନ୍ତି । ଏହା ଯେବେ ସତ୍ୟ ହୁଏ, ଆମ୍ଭେମାନେ କହୁଁ, ଧନ୍ୟ ମଧୁସୂଦନ ! ଯେଉଁ ଦେଶର ପ୍ରାଚୀନ ସାହିତ୍ୟ ଆଦିରସ ପ୍ଳାବିତ, ଯେଉଁ ଦେଶର ଆଧୁନିକ ଶ୍ରେଷ୍ଠ ଲେଖକ ତାହାର ପ୍ରଭାବକୁ ଅତିକ୍ରମ କରି ନ ପାରି ପିତା-କନ୍ୟା, ଭ୍ରାତା-ଭଗିନୀର ପବିତ୍ର ଅମୃତମୟ ସମ୍ବନ୍ଧକୁ ମଧ୍ୟ ବିକୃତ କଲେ, ସେହି ଦେଶରେ ତୁମ୍ଭେ ସୁରୁଚି ଓ ସଂଯମର ମହିମା ପ୍ରଚାର କରି ଦୃଢ଼ ଗମ୍ଭୀର ସ୍ୱରରେ ପବିତ୍ରତାର ଜୟ ଘୋଷଣା କରିଗଲ । ଏ ସଙ୍ଗୀତର ଅବତାରଣା କିଏ କଲା ? କାହା ପ୍ରାଣରେ ନବଯୁଗର ଭେରୀ ନିନାଦିତ ହେଲା ? କିଏ ଗାଇଲା—"ଶୁଣ ନରେ ନବସମ୍ବାଦ ବାରେ ତେଜି ଶ୍ରବଣ ।" ବୀରରସ କବିତାରେ ରାଧାନାଥ ସିଦ୍ଧହସ୍ତ । ମଧୁସୂଦନ ଗାଇଥିଲେ—

"କେ ଅଛୁ ଏ ବୀର ମଧ୍ୟେ କାପୁରୁଷ ଭୀରୁ,
ଏହି କ୍ଷଣି ପଳାଉ ସେ ଏ ବୀର ଶିବିରୁ ।"

କିନ୍ତୁ ମହାଯାତ୍ରାର ସପ୍ତମ ସର୍ଗର ବୀରରସର ଅକ୍ଷୟ ଉତ୍ସ ନିକଟରେ ଏହା କ୍ଷୀଣସ୍ରୋତା ନଦୀପ୍ରାୟ । ସ୍ୱଦେଶ ପ୍ରେମର ସଙ୍ଗୀତ ରାଧାନାଥ ଗାଇଥିଲେ—

"ପାହିଲାଣି ଏବେ ବିଷାଦଯାମିନୀ
ଫୁଟିବ ଉତ୍କଳ-ଭାଗ୍ୟ-କମଳିନୀ ।"

ମଧୁସୂଦନ ମଧ୍ୟ ଉତ୍କଳର ମୋହନ ରୂପରେ ମୁଗ୍ଧ ହୋଇ ଗାଇଥିଲେ—

"ମହାନଦୀ ବ୍ରାହ୍ମଣୀ ସେବିତ
ସୁବର୍ଣ୍ଣରେଖା ଋଷିକୁଲ୍ୟା
ଅଟବୀ ଅଚଳ ବୃନ୍ଦଧାରୀ
ଉତ୍କଳ ସୁଷମା ଅତୁଲ୍ୟା ।"

କିନ୍ତୁ ସେ ଏ ବିଷୟରେ ରାଧାନାଥଙ୍କ ଶିଷ୍ୟ । ମୌଳିକତା ରାଧାନାଥଙ୍କର । ବୈରାଗ୍ୟର ସଙ୍ଗୀତରେ ମଧ୍ୟ ରାଧାନାଥଙ୍କ ଦାବୀ ଅଗ୍ରଗଣ୍ୟ ।

"କେହି ରହି ନାହିଁ  ରହିବେ ନାହିଁଟି
ଭବରଙ୍ଗଭୂମି ତଳେ ।
ସର୍ବେ ନିଜ ନିଜ  ଅଭିନୟ ସାରି
ବାହୁଡ଼ିବେ କାଳବଳେ ।"

ମଧୁସୂଦନ ମଧ୍ୟ ଗାଇଅଛନ୍ତି—

"ଯାହାର ସ୍ମରଣେ ନର ଶୋକଶ୍ୱାସ ଛାଡ଼ି,
ଅତୀତକୁ ଉଦ୍‌ବୋଧଇ ବୃଥା ଖାଲି ଖାଲି ।"

ଏ ବିଷୟରେ ମଧ୍ୟ ସେ ରାଧାନାଥଙ୍କ ଶିଷ୍ୟ । କିନ୍ତୁ ଗୋଟିଏ ବିଷୟରେ ମଧୁସୂଦନ ରାଧାନାଥଙ୍କଠାରୁ ଶ୍ରେଷ୍ଠ । ନବଯୁଗର, ନବଜୀବନର, ଧର୍ମମୟ ସଙ୍ଗୀତର, ସଂଯମର, କର୍ମଜୀବନର ପ୍ରଧାନ ଗାୟକ ମଧୁସୂଦନ । ଆଧୁନିକ ଉତ୍କଳକୁ କର୍ମମୟ ରଣଚତ୍ୱରକୁ ବଲ୍‌ଗା ଧାରଣ କରି ଆଣିବା ବିଷୟରେ ସେହି ପ୍ରଥମ ।

ଜନସେବା ଓ ଭଗବଦ୍ ଭକ୍ତିର ପ୍ରବର୍ତ୍ତକ ମଧୁସୂଦନ, ଜୀବନରେ ଯେପରି, ସାହିତ୍ୟରେ ସେହିପରି । ରାଧାନାଥ ବୈରାଗ୍ୟବିଷାଦମୟ ସଙ୍ଗୀତର ଗାୟକ । ଜଗତ୍ ନଶ୍ୱର, ମାୟା, ସ୍ୱପ୍ନ । ସାର କେବଳ ପ୍ରେମ । ସେ କେଉଁ ପ୍ରେମ ? ଏକପ୍ରକାର ସଂକୀର୍ଣ୍ଣ ପ୍ରେମ ? ଜୀବନର ଉଦ୍ଦେଶ୍ୟ, ପରିଣାମ, କର୍ତ୍ତବ୍ୟ, ଲକ୍ଷ୍ୟ, ଜୀବନପ୍ରହେଳିକା ବା ସମସ୍ୟାର ପୂରଣ ବିଷୟରେ ରାଧାନାଥ କ'ଣ କହିଅଛନ୍ତି ? କି ମୀମାଂସାରେ ଉପନୀତ ହୋଇଅଛନ୍ତି ? ଗ୍ରନ୍ଥାବଳୀ ଖୋଜିବାକୁ ହେବ, ମିଳିଲେ ମିଳି ପାରେ । ମଧୁସୂଦନଙ୍କ ବିରଳ ପଦାବଳୀ ଭିତରେ ଅନ୍ୱେଷଣ କର, ଯଥାର୍ଥ ଜୀବନର ମୀମାଂସା ପାଇବ ।

"ତେଜି ଆସ ଆଳସ୍ୟ ପରିହରି
ମହାଜନ ମାର୍ଗ ଅନୁସରି
ଜଗତର ସେବା କର ପ୍ରାଣପଣେ
ଧରି ହରିପାଦପଦ୍ମଭେଳା ।
ଅତୀତର ବୃଥା ଭାବନାରେ
ଅବା ଭବିଷ୍ୟର ଛଳନାରେ
ନ ଭୁଲରେ ଭାଇ, ବର୍ତ୍ତମାନେ ଥାଇ
ଲକ୍ଷ୍ୟ ସ୍ଥିର କର ଫେଣ୍ଟି ଡୋଳା ।"

ସମନ୍ୱୟ—ବହୁ ମଧ୍ୟରେ ଏକର ଦର୍ଶନ ଓ ଗ୍ରହଣ ମହତ୍ତ୍ୱର ଲକ୍ଷଣ । ମଧୁସୂଦନ ପ୍ରାଚ୍ୟ ଓ ପ୍ରତୀଚ୍ୟର ସୁନ୍ଦର ମିଳନ ସଂଘଟିତ କରିଥିଲେ । ପ୍ରାଚୀନ ଆର୍ଯ୍ୟ ଋଷି, ବୁଦ୍ଧ, ଚୈତନ୍ୟଙ୍କ ସଙ୍ଗେ ଈଶା, ମୋଶା, ମହମ୍ମଦ, ଲୁଥର ସମସ୍ତଙ୍କର ଆଦର୍ଶ ସେ ପ୍ରାଣରେ ଧାରଣ କରି ତାହାକୁ ବ୍ୟାଖ୍ୟାନ କରିଥିଲେ । ସେ ନିଷ୍ଠାପର ହିନ୍ଦୁ ବ୍ରାହ୍ମଣ, ଖ୍ରୀଷ୍ଟୀୟ ଧର୍ମଯାଜକ ଓ ମହମ୍ମଦୀୟ ମୌଲବୀ ସମସ୍ତଙ୍କ ପ୍ରିୟପାତ୍ର ଘନିଷ୍ଠ ବନ୍ଧୁ ଥିଲେ । ସମସ୍ତେ ତାଙ୍କୁ ଆପଣାର ବୋଲି ମଣୁଥିଲେ । ନିରାମିଷଭୋଜୀ, ସଂଯତାହାରୀ, ଉପାସନାସକ୍ତ ଥିବାରୁ ହିନ୍ଦୁମାନେ ମଧ୍ୟ ତାଙ୍କୁ ନିଷ୍ଠାପର ମୁନି ଋଷି

ବୋଲି ମନେ କରୁଥିଲେ । ତାଙ୍କ ଜ୍ୟେଷ୍ଠପୁତ୍ରଙ୍କ ବିବାହୋତ୍ସବ ଦିନ ବ୍ରାହ୍ମଣ, ବୈଦ୍ୟ, କାୟସ୍ଥ, କରଣ, ମହାନାୟକ—ଓଡ଼ିଆ, ବଙ୍ଗାଳୀ ସମସ୍ତେ ଏକାସନରେ ବସି ଭୋଜନ କଲେ । ତାହା ଉତ୍କଳ ଦୀପିକାରେ ପ୍ରକାଶିତ ଓ ପ୍ରଶଂସିତ ହୋଇଥିଲା । ଆଦି, ସାଧାରଣ ଓ ନବବିଧାନ ସମସ୍ତ ଶାଖାରେ ସେ ନିଜର ବୋଲି ଗୃହୀତ ହୋଇଥିଲେ । ଉକ୍ତ ସମ୍ପ୍ରଦାୟଗତ ପ୍ରଭେଦ ତାଙ୍କ ବିଶାଳ ହୃଦୟରେ ସ୍ଥାନ ପାଇ ନ ଥିଲା । ସେ ନିଜର ପୁତ୍ର କନ୍ୟାମାନଙ୍କ ବିବାହ ସୂତ୍ରରେ ସମସ୍ତ ଦଳର ନେତୃସ୍ଥାନୀୟମାନଙ୍କ ସଙ୍ଗେ ମିଳିତ ହୋଇଥିଲେ । କଟକରେ ଉକ୍ତ ଦଳଗତ ବୈଷମ୍ୟର ଚିହ୍ନମାତ୍ର ନାହିଁ । ଜ୍ଞାନ, କର୍ମ, ଭକ୍ତି ତିନୋଟି ମାନବର ସ୍ୱାଭାବିକ ଧର୍ମ ହେଲେହେଁ ତାହାର ସମନ୍ୱୟ ଅତ୍ୟଳ୍ପ ସ୍ଥଳରେ ଦୃଷ୍ଟ ହୁଏ । କେହି କର୍ମୀ, କେହି ଜ୍ଞାନୀ, କେହି ଭକ୍ତ । ମଧୁସୂଦନଙ୍କ ଚରିତ୍ରରେ ତିନୋଟିର ଭାବ ସମନ୍ୱିତ ହୋଇଥିଲା । ତାଙ୍କର ଭକ୍ତି ଜ୍ଞାନମୂଳକ, ତାଙ୍କର ଜ୍ଞାନ ଭକ୍ତି-ସମ୍ବଳିତ, ତାଙ୍କର କର୍ମ ପ୍ରେମାନୁପ୍ରାଣିତ ଥିଲା । କିନ୍ତୁ ଉଚ୍ଚ ଭାବବୃତ୍ତି ବା ହୃଦୟର ଔଦାର୍ଯ୍ୟ ତାଙ୍କ ଚରିତ୍ରର ପ୍ରଧାନ ଲକ୍ଷଣ ଥିଲା । × × ×

ବାସ୍ତବ ଜୀବନରେ କିଛି ହିଁ ଚିର ନୁହେଁ । ମଧୁସୂଦନ ଆଜି ନାହାନ୍ତି । ଦୀର୍ଘ ଜୀବନରେ କେହି ତାହାଙ୍କର ଶତ୍ରୁ ନାହିଁ । ଆମ୍ଭେମାନେ ତାଙ୍କର ଅନେକ ରୂପ ଦେଖିଅଛୁ । କିନ୍ତୁ ଗୋଟିଏ ରୂପ ଚିରକାଳ ହୃଦୟରେ ଲିଖି ରହିଅଛି । ବ୍ରହ୍ମମନ୍ଦିର ନାନା ଲତାପୁଷ୍ପଦ୍ୱାରା ମଣ୍ଡିତ । ଲତାକୁଞ୍ଜ ମଧ୍ୟରେ ଋଷିପ୍ରତିମ ତେଜସ୍ୱୀ ଗମ୍ଭୀର ସୂର୍ଯ୍ୟାଭ ମଧୁସୂଦନ ବସି ଯେଉଁ ବ୍ରହ୍ମମନ୍ତ୍ର ପାଠ କରିଥିଲେ, ତାହା ହୃଦୟପବିତ୍ରକାରୀ—

“ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା ।
ଯେ ଧାମାନି ଦିବ୍ୟାନି ଆତସ୍ଥୁଃ ।
ବେଦାହମେତଂ ପୁରୁଷଂ ମହାନ୍ତ—
ମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାଽତିମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।”

---